# ଜେ.ବି.ଏସ୍ ହାଲ୍‌ଡେନ୍

ଲେଖକ
ଅଧ୍ୟାପକ ଦାମୋଦର ପରିଡ଼ା



ପ୍ରକାଶକ :
**ପଞ୍ଚସଖା ପ୍ରକାଶନ**
(ପ୍ରକାଶନ ବିଭାଗ)
ସୂତାହାଟ, କଟକ-୧

ପ୍ରଥମ ପ୍ରକାଶ :
୫.୧୧.୧୯୯୨

ମୁଦ୍ରଣ :
**ପଞ୍ଚସଖା ପ୍ରକାଶନ**
(ଅଫସେଟ୍ ମୁଦ୍ରଣ ବିଭାଗ)
ସୂତାହାଟ, କଟକ-୧

**ମୂଲ୍ୟ :**
**ପଚିଶି ଟଙ୍କା ମାତ୍ର**






# ମୁଖବନ୍ଧ

ପ୍ରଫେସର ଜେ.ବି.ଏସ୍. ହାଲ୍‌ଡ଼େନ୍‌ଙ୍କ ପରି ଜଣେ ବିଶ୍ୱ ବିଖ୍ୟାତ ବୈଜ୍ଞାନିକ ଯେ ଆମ ରାଜ୍ୟରେ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ଜେନେଟିକ୍‌ସ ଓ ବାଇଓମେଟ୍ରି ଲାବୋରେଟୋରୀ ସ୍ଥାପନ କରି ଉଚ୍ଚ କୋଟୀର ଗବେଷଣା କରିଥିଲେ ଏହା ହୁଏତ ଅନେକ ଲୋକ ଜାଣି ନଥିବେ। ପ୍ରଫେସର ହାଲ୍‌ଡ଼େନ୍ ୧୯୬୨ ଠାରୁ ୧୯୬୪ ମସିହା ପର୍ଯ୍ୟନ୍ତ ଏହି ରାଜ୍ୟରେ ରହି ଆମ ପରି ସରଳ ଜୀବନ ଯାପନ କରି ଯେଉଁ ମୂଲ୍ୟବାନ ବୈଜ୍ଞାନିକ ତଥ୍ୟ ଦେଇ ଯାଇଅଛନ୍ତି ତାହାର ପଟାନ୍ତର ନାହିଁ।

ଅନେକ ସମୟରେ ଅଜ୍ଞାନତା ଓ ଭ୍ରମଧାରଣା ହେତୁ ମଣିଷ ମନରେ ଅନେକଗୁଡ଼ିଏ କୁସଂସ୍କାର ସୃଷ୍ଟି ହୋଇଥାଏ ଯାହାକି ସାମାଜିକ ଓ ଅର୍ଥନୈତିକ ପ୍ରଗତି ପଥରେ ବାଧା ସୃଷ୍ଟି କରିଥାଏ। କିନ୍ତୁ ବିଜ୍ଞାନର ପ୍ରସାର ଓ ବୈଜ୍ଞାନିକ ଜ୍ଞାନର ବହୁଳ ବ୍ୟବହାର ଦ୍ୱାରା ଏସବୁ ସମସ୍ୟାର ସମାଧାନ କରାଯାଇ ଏକ ସୁସ୍ଥ ସମାଜ ଗଠନର ଭିତ୍ତି ସ୍ଥାପନ କରାଯାଇପାରିବ। ପ୍ରଫେସର ହାଲ୍‌ଡ଼େନ୍ ଏହି ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ ସାରା ଜୀବନ ବୈଜ୍ଞାନିକ ଗବେଷଣାରେ ବିତାଇବା ସଙ୍ଗେ ସଙ୍ଗେ ଅନେକ ବୈଜ୍ଞାନିକ ଓ ଗବେଷକମାନଙ୍କୁ ମଧ୍ୟ ତାଙ୍କରି ଆଦର୍ଶରେ ଅନୁପ୍ରାଣିତ କରି ପାରିଅଛନ୍ତି। ଆମର ଭାବୀ ବଂଶଧରମାନେ ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ବିଜ୍ଞାନ ଓ ବୈଷୟିକ ଜ୍ଞାନ ମାଧ୍ୟମରେ ଆମ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି କରିବା ପାଇଁ ଆଗ୍ରହ ପ୍ରକାଶ କରିବା ଉଚିତ୍।

"ପ୍ରଫେସର ହାଲ୍‌ଡ୍ରେନ୍ ଜନ୍ମ ଶତବାର୍ଷିକୀ" ପାଳନ ଅବସରରେ କୃଷି ମହାବିଦ୍ୟାଳୟର ଅଧ୍ୟାପକ ଶ୍ରୀଯୁକ୍ତ ଦାମୋଦର ପରିଡ଼ା କିଶୋର ଛାତ୍ରଛାତ୍ରୀମାନଙ୍କୁ ପ୍ରଫେସର ହାଲ୍‌ଡ୍ରେନ୍‌ଙ୍କର ବହୁମୁଖୀ ପ୍ରତିଭା, ବୈଜ୍ଞାନିକ କାର୍ଯ୍ୟକଳାପ, ଦୁଃସାହସିକ ଗବେଷଣା ଓ ମାନବିକତା ବୋଧ ଉପରେ ଆଧାରିତ ଚିନ୍ତାଧାରା ସହ ପରିଚୟ କରାଇ ଦେବାପାଇଁ "ଜେ.ବି.ଏସ୍.ହାଲ୍‌ଡ୍ରେନ୍" ପୁସ୍ତକଟି ପ୍ରଣୟନ କରିଛନ୍ତି। ମୁଁ ଏଥିପାଇଁ ଅଧ୍ୟାପକ ପରିଡ଼ାଙ୍କୁ ଅଭିନନ୍ଦନ ଜଣାଉଛି। ଆଶାକରୁଛି ପୁସ୍ତକଟି ପାଠକ ମହଲରେ ବିଶେଷଭାବରେ ଆଦୃତ ହେବା ସହିତ ପାଠକମାନଙ୍କୁ ବୈଜ୍ଞାନିକ ହାଲ୍‌ଡ୍ରେନ୍‌ଙ୍କର ପଦାଙ୍କ ଅନୁସରଣ କରି ଜନ କଲ୍ୟାଣକାରୀ ବିଜ୍ଞାନ ସମ୍ବନ୍ଧୀୟ ଗବେଷଣା କରିବା ପାଇଁ ଅନୁପ୍ରାଣିତ କରିପାରିବ।

ଭୁବନେଶ୍ୱର
୫।୧୧।୯୨

ମୁଖ୍ୟମନ୍ତ୍ରୀ, ଓଡ଼ିଶା।

—o—

# ସ୍ୱୀକାରୋକ୍ତି

ପନ୍ତନଗର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କରୁଥିବାବେଳେ "ମଣିଷର ବଂଶଗତ ରୋଗ" ବିଷୟରେ ଏକ ପ୍ରବନ୍ଧ ଲେଖିବା ପାଇଁ 'ଆନୁବଂଶିକୀ ବିଭାଗ'ର ଅଧ୍ୟାପକ ମୋତେ କହିଥିଲେ। ବିଶ୍ୱବିଦ୍ୟାଳୟ ପାଠାଗାରରେ ଥିବା ବିଜ୍ଞାନ ସଂପର୍କୀୟ ପତ୍ରପତ୍ରିକାରୁ ଏ ସମ୍ବନ୍ଧରେ ବିଷୟବସ୍ତୁ ଖୋଜିବା ପୂର୍ବରୁ ପ୍ରଫେସର ଡ଼କ୍ଟର ଜଟାଶଙ୍କର ନନ୍ଦଙ୍କ ସହ ପରାମର୍ଶ କରିଥିଲି। ଡ଼କ୍ଟର ନନ୍ଦ ମୋତେ ମାନବୀୟ ଆନୁବଂଶିକୀ ସଂପର୍କରେ ପ୍ରଫେସର ହାଲ୍‌ଡ଼େନ୍ କେତେକ ଉପାଦେୟ ବୈଜ୍ଞାନିକ ନିବନ୍ଧ ଓ ପୁସ୍ତକ ସମୀକ୍ଷା ପ୍ରକାଶ କରିଥିବା ସୂଚାଇଥିଲେ। ଜର୍ଣ୍ଣାଲ ଅଫ୍ ଜେନେଟିକସ୍ ପତ୍ରିକାରୁ ଖୋଜିଲେ ଏ ସମ୍ପର୍କରେ ଅନେକଗୁଡ଼ିଏ ତଥ୍ୟ ମିଳିପାରିବା କଥା ସେ ଜଣାଇ ଥିଲେ। ମୁଁ ହାଲ୍‌ଡ଼େନ୍‌ଙ୍କ ଦ୍ୱାରା ଲିଖିତ ନିବନ୍ଧ ଖୋଜୁ ଖୋଜୁ ଗୋଟିଏ ପତ୍ରିକାରେ ଦେଖିଲି ପ୍ରଫେସର ହାଲ୍‌ଡ଼େନ୍‌ଙ୍କ ଠିକଣାରେ "ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର" ଲେଖାଅଛି। ମୋତେ ପ୍ରଥମେ ଆଶ୍ଚର୍ଯ୍ୟ ଲାଗିଲା। ପରେ ଚିନ୍ତା କଲି ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟ ଆମେରିକା ସରକାରଙ୍କ ଆର୍ଥିକ ସହାୟତାରେ ଚାଲୁଥିଲା। ତେଣୁ ପ୍ରଫେସର ହାଲ୍‌ଡ଼େନ୍ ଜଣେ ଆମେରିକାନ ପ୍ରଫେସର ହୋଇଥିବେ। କିନ୍ତୁ ଡ଼କ୍ଟର ନନ୍ଦଙ୍କ ସହ ଆଲୋଚନା କଲାପରେ ଜାଣିବାକୁ ପାଇଲି ଯେ ପ୍ରଫେସର ହାଲ୍‌ଡ଼େନ୍ ଆମେରିକାବାସୀ ନୁହଁନ୍ତି। ସେ ଜଣେ ସୁପ୍ରତିଷ୍ଠିତ ବ୍ରିଟିଶ୍ ବୈଜ୍ଞାନିକ। ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କର ଅନୁରୋଧକ୍ରମେ ସେ ଓଡ଼ିଶାର କୃଷି ମହାବିଦ୍ୟାଳୟ ପରିସରରେ ଏକ ଗବେଷଣାଗାର ପ୍ରତିଷ୍ଠା କରିଥିଲେ ଏବଂ ଜୀବନର ଶେଷ ସମୟତକ ସେଠାରେ ଅତିବାହିତ କରିଥିଲେ। ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ଓଡ଼ିଶା କୃଷି ଓ ବୈଷୟିକ ବିଦ୍ୟାଳୟ ଗବେଷଣା ନିର୍ଦ୍ଦେଶାଳୟର ସେମିନାର ହଲ୍ ର ନାମ "ହାଲ୍‌ଡ଼େନ୍ ହଲ୍" ରଖାଯାଇଛି।

ସ୍ନାତକୋତ୍ତର ଶିକ୍ଷା ସମାପ୍ତିପରେ ମୁଁ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ଶୁଷ୍କାଞ୍ଚଳ ଗବେଷଣା କେନ୍ଦ୍ରରେ କନିଷ୍ଠ ବୈଜ୍ଞାନିକ ଭାବରେ ଯୋଗ ଦେଇଥିଲି। ଶୁଷ୍କାଞ୍ଚଳ ଗବେଷଣା କେନ୍ଦ୍ରର ବିଜ୍ଞାନାଗାର ଓ କାର୍ଯ୍ୟାଳୟକୁ ସଂଲଗ୍ନ ହୋଇ ହାଲ୍‌ଡ଼େନ୍ ହଲଟି ଅବସ୍ଥିତ ହୋଇଥିବାରୁ ମୋତେ ପ୍ରତିଦିନ ହଲ୍ ସମ୍ମୁଖରେ ରଖାଯାଇଥିବା ହାଲ୍‌ଡ଼େନ୍‌ଙ୍କର ପ୍ରତିମୂର୍ତ୍ତି ପାଖଦେଇ ଯିବାକୁ

ପଡୁଥିଲା । କିନ୍ତୁ ହାଲ୍‌ଡ଼େନ୍‌ଙ୍କର ଆନୁବଂଶିକୀ ସମ୍ବନ୍ଧୀୟ ପ୍ରଦତ୍ତ ତଥ୍ୟଗୁଡ଼ିକ ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟକଳାପ ସଂପର୍କରେ ଜାଣିବା ପାଇଁ ମୁଁ ବିଶେଷ ଆଗ୍ରହ ପ୍ରକାଶ କରିନଥିଲି। ଦିନେ ପ୍ରଫେସର ଡ଼କ୍ଟର ସୁଶୀଲ କୁମାର ସିହ୍ନାଙ୍କ ସହ ଏକ ଆଲୋଚନା କଲାବେଳେ ସେ କହିଲେ ‘‘ପରିଡ଼ା, ଏବର୍ଷ ହାଲ୍‌ଡ଼େନ୍‌ଙ୍କ ଜନ୍ମ ଶତବାର୍ଷିକୀ ପାଳନ କରାଯାଇଛି। ଯଦି ହାଲ୍‌ଡ଼େନ୍‌ଙ୍କ ଜୀବନ ଓ କାର୍ଯ୍ୟକଳାପକୁ ନେଇ ଛାତ୍ରଛାତ୍ରୀଙ୍କ ପାଇଁ ବହିଟିଏ ଲେଖା ଯାଆନ୍ତା, ଖୁବ୍ ଭଲ ହୁଅନ୍ତା।’’ ବିଶ୍ୱବିଖ୍ୟାତ ବୈଜ୍ଞାନିକ ହାଲ୍‌ଡ଼େନ୍‌ଙ୍କର ଜୀବନ ଓ କାର୍ଯ୍ୟକଳାପ ସଂପର୍କରେ ମୁଁ ଯେ କିଛି ଲେଖିପାରିବି ସେ ବିଷୟରେ ମୁଁ ନିଜେ ସନ୍ଦିହାନ ଥିଲି। ତେଣୁ କିଛି ନକହି ନୀରବ ରହିବାରୁ ଡ଼କ୍ଟର ସିହ୍ନା କହିଲେ ‘‘ମୋ ପାଖରେ ହାଲ୍‌ଡ଼େନ୍‌ଙ୍କ ଦ୍ୱାରା ପ୍ରକାଶିତ ଅନେକଗୁଡ଼ିଏ ନିବନ୍ଧ, ପୁସ୍ତକ ସମୀକ୍ଷା ଓ ବହି ଅଛି। ସେହି ସବୁ ନେଇ ତୁମେ ଲେଖିବାକୁ ଆରମ୍ଭ କର। ପରେ ରମେଶ ବାବୁଙ୍କ ସହ ମିଶି ଇଂରାଜୀରେ କିମ୍ୱା ଓଡ଼ିଆରେ କଲେଜ ସ୍ତରରେ ଛାତ୍ରମାନଙ୍କ ପାଇଁ ବଡ଼ ବହିଟିଏ ଲେଖିବା।’’

ଡ଼କ୍ଟର ସିହ୍ନାଙ୍କର ଏହି ସୁଚିନ୍ତିତ ପରାମର୍ଶ କ୍ରମେ ବହିଟିଏ ଲେଖିବାକୁ ସ୍ଥିର କଲି। ମାତ୍ର ମୋ ମନରେ ଏକ ବିରାଟ ପ୍ରଶ୍ନ କୁହେଳିକା ପରି ଉଙ୍କି ମାରିବାକୁ ଆରମ୍ଭ କରିଥିଲା। ପ୍ରଶ୍ନଟି ହେଲା, କିଶୋର ଛାତ୍ରଛାତ୍ରୀ ମାନଙ୍କ ଦ୍ୱାରା ଆଦୃତ ହେଲାଭଳି ପ୍ରଫେସର ହାଲ୍‌ଡ଼େନ୍‌ଙ୍କ ଜୀବନ ଉପରେ କିଭଳି ଏକ ପୁସ୍ତକ ଲେଖାଯିବ ? କାରଣ ପ୍ରଫେସର ହାଲ୍‌ଡ଼େନ୍ ଯେ କେବଳ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଥିଲେ ତା ନୁହେଁ, ସେ ଏକାଧାରରେ ଜଣେ ବୈଜ୍ଞାନିକ, ରାଜନୀତିଜ୍ଞ, ସ୍ୱନାମଧନ୍ୟ ଗବେଷକ, ସଂପାଦକ, ଦୁଃସାହସୀ ସୈନିକ ଓ ବିଜ୍ଞାନର ପ୍ରଚାରକ ଭାବରେ ମଧ୍ୟ ସୁପରିଚିତ ଅଟନ୍ତି। ଏତଦ୍‌ବ୍ୟତୀତ ପ୍ରଫେସର ହାଲ୍‌ଡ଼େନ୍ ଏଭଳି ଏକ ବ୍ୟକ୍ତି ଯାହଙ୍କର ଜୀବନ ଯେ କେବଳ ଘଟଣା ବହୁଳ ଓ ବୈଚିତ୍ର୍ୟମୟ ତା ନୁହେଁ, ଅତ୍ୟନ୍ତ ବିସ୍ମୟକର ମଧ୍ୟ। ହାଲ୍‌ଡ଼େନ୍‌ଙ୍କ ଦ୍ୱାରା ଲିଖିତ ପୁସ୍ତକ ଓ ବୈଜ୍ଞାନିକ ତଥ୍ୟାବଳୀ ଅତ୍ୟନ୍ତ ଉଚ୍ଚସ୍ତରର ଏବଂ ଗାଣିତିକ ତଥ୍ୟ ଉପରେ ପର୍ଯ୍ୟବସିତ। ତେଣୁ ତାକୁ ସରଳ ଭାଷାରେ କିଶୋର ଛାତ୍ରଛାତ୍ରୀମାନଙ୍କ ପାଇଁ ଲେଖିବା ଅତ୍ୟନ୍ତ କଷ୍ଟକର ମନେ ହୋଇଥିଲା। ଡ଼କ୍ଟର ସିହ୍ନାଙ୍କ ସହ ଏ ବିଷୟରେ ଆଲୋଚନା କଲାପରେ ସେ କହିଥିଲେ, ‘‘ମହାବିଦ୍ୟାଳୟ ସ୍ତରର ଛାତ୍ରଛାତ୍ରୀମାନଙ୍କ ପାଇଁ ଅନେକ

ବହି ଲେଖାଯାଉଛି କିନ୍ତୁ ବିଦ୍ୟାଳୟ ସ୍ତରର ଛାତ୍ରଛାତ୍ରୀ ମାନଙ୍କୁ ବିଜ୍ଞାନ ଓ ବୈଜ୍ଞାନିକ ଚିନ୍ତାଧାରା ପ୍ରତି ଆକୃଷ୍ଟ କଲାଭଳି ଓଡ଼ିଆ ଭାଷାରେ ବିଜ୍ଞାନ ପୁସ୍ତକର ଯଥେଷ୍ଟ ଅଭାବ ରହିଛି। ତୁମେ ଲେଖିବାକୁ ଆରମ୍ଭ କର, କୌଣସି ଅସୁବିଧା ହେବ ନାହିଁ।''

ଡ଼କ୍ଟର ସିହ୍ନା ଓ ଡ଼କ୍ଟର ରମେଶ ଚନ୍ଦ୍ର ପରିଡ଼ାଙ୍କ ସହ ଅନେକଥର ଆଲୋଚନା କଲାପରେ ବହିଟିର ବିଷୟବସ୍ତୁ କଣ ହେବ ଏବଂ କିପରି ଲେଖାଯିବ ତାର ଏକ ସୂଚୀପତ୍ର ପ୍ରସ୍ତୁତ କରିନେଲି। ମାତ୍ର ସୂଚୀପତ୍ର ଅନୁସାରେ ବହିଟିକୁ ଲେଖିବା ଆଦୌ ସହଜସାଧ୍ୟ ନଥିଲା। କାରଣ ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ବହୁମୁଖୀ ପ୍ରତିଭା ସମ୍ପର୍କୀୟ ତଥ୍ୟ ଯେଉଁ ପତ୍ର ପତ୍ରିକା ବା ପୁସ୍ତକରେ ପ୍ରକାଶିତ ହୋଇଛି ସେଗୁଡ଼ିକ ଓଡ଼ିଶାର ପାଠାଗାର ଗୁଡ଼ିକରେ ଉପଲବ୍ଧ ନୁହେଁ। ଏସବୁ ବାଧା ବିଘ୍ନ ସତ୍ତ୍ୱେ ଡ଼କ୍ଟର ସିହ୍ନାଙ୍କର ନିରବଚ୍ଛିନ୍ନ ପ୍ରେରଣା ଯୋଗୁଁ ବହିଟିର ପାଣ୍ଡୁଲିପିଟିକୁ ଅଳ୍ପ ସମୟ ମଧ୍ୟରେ ମୁଁ ପ୍ରସ୍ତୁତ କରିବାକୁ ସମର୍ଥ ହୋଇପାରିଲି।

ଏହି ପୁସ୍ତକଟିର ପରିକଳ୍ପନା ଓ ବିଧିବଦ୍ଧ ରୂପାୟନରେ ମୁଁ ବିଶିଷ୍ଟ ବୈଜ୍ଞାନିକ ପ୍ରଫେସର ଡ଼କ୍ଟର ସୁଶୀଲ କୁମାର ସିହ୍ନାଙ୍କ ଦ୍ୱାରା ବିଶେଷ ଭାବରେ ଉପକୃତ ହୋଇଅଛି। ପ୍ରଫେସର ସିହ୍ନାଙ୍କର ଛାତ୍ରବତ୍ସଳତା, ସମୟୋଚିତ ଉପଦେଶ ଓ ପ୍ରେରଣା ଚିରକାଳ ମୋର ସ୍ମୃତିରେ ସତେଜ ରହିବ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ମାନ୍ୟବର ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ପୁସ୍ତକଟି ପ୍ରକାଶନ କରିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରିବା ସହ ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ଅମ୍ଳାନ ସ୍ମୃତି ଉଦ୍ଦେଶ୍ୟରେ ଏକ ଭାବଗର୍ଭକ ମୁଖବନ୍ଧ ଲେଖିଦେଇ ଥିବାରୁ ମୁଁ ତାଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି।

ବହୁ ବ୍ୟକ୍ତି ବିଶେଷଙ୍କ ପରାମର୍ଶ ଓ ଅନୁଷ୍ଠାନର ସାହାଯ୍ୟ ଫଳରେ ଏହା ପୂର୍ଣ୍ଣାଙ୍ଗ ହୋଇ ପାରିଥିବାରୁ ମୁଁ ସେମାନଙ୍କ ନିକଟରେ ମଧ୍ୟ କୃତଜ୍ଞତା ସ୍ୱୀକାର କରୁଛି। ବିଶେଷତଃ ଡ଼କ୍ଟର ଈଶ୍ୱର ଚନ୍ଦ୍ର ମହାପାତ୍ର, କୁଳପତି, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ; ଡ଼କ୍ଟର ନିରଞ୍ଜନ ପଣ୍ଡା, କୁଳପତି, ସମ୍ବଲପୁର ବିଶ୍ୱବିଦ୍ୟାଳୟ; ପ୍ରଫେସର ଡ଼କ୍ଟର ଲକ୍ଷ୍ମୀନାରାୟଣ କର ଓ ଅଧ୍ୟାପକ ଡ଼କ୍ଟର ରମେଶ ଚନ୍ଦ୍ର ପରିଡ଼ା ଏହି ପୁସ୍ତକଟିର ପ୍ରଣୟନ ବେଳେ ସୁଚିନ୍ତିତ

ପରାମର୍ଶ, ଓ ତଥ୍ୟ ଯୋଗାଇ ଦେଇ ମୋର କାର୍ଯ୍ୟକୁ ସରଳ କରିଦେଇଛନ୍ତି। ଏତଦ୍‌ବ୍ୟତୀତ ଡ଼କ୍ଟର ଜ୍ଞାନେନ୍ଦ୍ର ମିତ୍ର, ଅଧକ୍ଷ, କୃଷି ମହାବିଦ୍ୟାଳୟ; ଡ଼କ୍ଟର ଚକ୍ରପାଣି ମିଶ୍ର, ଅଧକ୍ଷ, ଗବେଷଣା ବିଭାଗ, ଡ଼କ୍ଟର ଦାମୋଦର ଲେଙ୍କା, ଅଧକ୍ଷ, ସଂପ୍ରସାରଣ ବିଭାଗ; ପ୍ରଫେସର ଡ଼କ୍ଟର ବିଶ୍ୱନାଥ ସାମଲୋ ଓ ପ୍ରାଧାପକ ଡ଼କ୍ଟର ଭିକ୍ଷାକାରୀ ମହାପାତ୍ର, ପାଦପ ପ୍ରଜନନ ବିଭାଗ ଏବଂ ମୋର ବନ୍ଧୁ ଶ୍ରୀଯୁକ୍ତ ନିରଞ୍ଜନ କୁମାର ଦାସ ମୋତେ ସମୟୋଚିତ ସାହାଯ୍ୟ ଯୋଗାଇ ଦେଇଥିବାରୁ ସେମାନଙ୍କ ପ୍ରତି କୃତଜ୍ଞତା ଜଣାଉଛି।

କିଶୋର ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଆଦୃତ କରିବା ପାଇଁ କଳାକାର ଶ୍ରୀଯୁକ୍ତ ରବି ନାରାୟଣ ସାହୁଙ୍କ ଦ୍ୱାରା ଅଙ୍କିତ କେତେଗୁଡ଼ିଏ ଚିତ୍ର ଉକ୍ତ ପୁସ୍ତକରେ ସନ୍ନିବେଶିତ କରାଯାଇଛି। କଳାକାର ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ରଥଙ୍କ ଦ୍ୱାରା ଅଙ୍କିତ ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ଏକ ତୈଳଚିତ୍ର ଉପରେ ପର୍ଯ୍ୟବଶିତ କରି ପୁସ୍ତକଟିର ପ୍ରଚ୍ଛଦପଟ୍ଟ ଅଙ୍କନ କରାଯାଇଛି। ଏଥିପାଇଁ ଶ୍ରୀଯୁକ୍ତ ସାହୁ ଓ ଶ୍ରୀଯୁକ୍ତ ରଥଙ୍କୁ ଧନ୍ୟବାଦ ଅର୍ପଣ କରୁଛି। ପ୍ରକାଶକ ଶ୍ରୀଯୁକ୍ତ ଜୟରାମ ମହାପାତ୍ର ଓ ତାଙ୍କର ପୁତ୍ର ଶ୍ରୀଯୁକ୍ତ ରବି କୁମାର ମହାପାତ୍ର ଖୁବ୍ ଅଳ୍ପ ସମୟ ମଧ୍ୟରେ ଏହି ପୁସ୍ତକଟିକୁ ସୁନ୍ଦର ଭାବରେ ପ୍ରକାଶ କରିଥିବାରୁ ତାଙ୍କୁ ମଧ୍ୟ ଧନ୍ୟବାଦ ଅର୍ପଣ କରୁଅଛି।

ପୁସ୍ତକଟିକୁ ତ୍ରୁଟିବିହୀନ କରି ପ୍ରକାଶ କରିବା ପାଇଁ ଯଥାସାଧ୍ୟ ଚେଷ୍ଟା କରାଯାଇଅଛି। ପୁସ୍ତକରେ ଥିବା କୌଣସି ଅନିଚ୍ଛାକୃତ ତ୍ରୁଟି ପାଠକଙ୍କର ଦୃଷ୍ଟିଗୋଚର ହେଲେ ସହୃଦୟତାର ସହ ମାର୍ଜନା କରିବେ ବୋଲି ଆଶାପୋଷଣ କରୁଛି।

ଭୁବନେଶ୍ୱର
୧୦।୧୦।୯୨

ଦାମୋଦର ପରିଡ଼ା

# ସୂଚୀପତ୍ର



—୦—



ଯୁବକ ହାଲ୍‌ଡେନ୍

# ୧

# ବିଜ୍ଞାନ ଜଗତର ଋଷି

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଉଇନଷ୍ଟନ୍ ଚର୍ଚ୍ଚିଲ୍ ଜଣେ ସୁପ୍ରତିଷ୍ଠିତ ବୈଜ୍ଞାନିକଙ୍କୁ ବ୍ରିଟିଶ୍ ସରକାରଙ୍କ ବିଜ୍ଞାନ ପରାମର୍ଶଦାତା ଭାବରେ ମନୋନୀତ କରିଥିଲେ । ଏହି ବୈଜ୍ଞାନିକ ଜଣେ କମ୍ୟୁନିଷ୍ଟ ହୋଇଥିବାରୁ ଶାସକ କଞ୍ଜରଭେଟିଭ୍ ଦଳର ବିଭିନ୍ନ ରାଜନୈତିକ ଚିନ୍ତାଧାରା ସହ ତାଂକର ଅନେକ ମତପାର୍ଥକ୍ୟ ରହିଥିଲା । ସେ ଅନେକ ସମୟରେ ଶାସକ ଦଳଦ୍ୱାରା ପ୍ରଣୀତ ନୀତିକୁ ବିଶ୍ଳେଷଣ କରି ଲଣ୍ଡନର କମ୍ୟୁନିଷ୍ଟ ସମ୍ବାଦପତ୍ର "ଡେଲି ୱାରକର" ରେ କଟୁ ସମାଲୋଚନା ମୂଳକ ପ୍ରବନ୍ଧ ପ୍ରକାଶ କରୁଥିଲେ । ଏତଦ୍‌ବ୍ୟତୀତ କମ୍ୟୁନିଷ୍ଟ ଦଳ ଦ୍ୱାରା ଆୟୋଜିତ ସାଧାରଣ ସଭାମାନଙ୍କରେ ଶାସକ ଦଳର ଅସ୍ୱାଭାବିକ ଜନବିରୋଧି ନୀତିକୁ ନିନ୍ଦାକରି ଅଭିଭାଷଣ ମଧ ଦେଉଥିଲେ । ଏହି କାରଣ ଯୋଗୁଁ ଉକ୍ତ ବୈଜ୍ଞାନିକଙ୍କ ଉପରେ ଶାସକଦଳର ସଭ୍ୟମାନେ ଅସନ୍ତୁଷ୍ଟ ଥିଲେ । ଚର୍ଚ୍ଚିଲ ନିଜ ଦଳର ଜଣେ ଅନୁଗତ ବୈଜ୍ଞାନିକଙ୍କୁ ବୈଜ୍ଞାନିକ ଉପଦେଷ୍ଟା ଭାବରେ ନିଯୁକ୍ତି ନଦେଇ ଶାସକ ଦଳ ବିରୋଧି ଜଣେ ବୈଜ୍ଞାନିକଙ୍କୁ ମନୋନୀତ କରିଥିବା ଯୋଗୁଁ ପ୍ରଧାନମନ୍ତ୍ରୀଙ୍କର ଏହି ନିଷ୍ପତ୍ତିକୁ ଅଧିକାଂଶ ସଭ୍ୟ କଠୋର ସମାଲୋଚନା କରିବା ସଙ୍ଗେ ସଙ୍ଗେ ଉକ୍ତ ବୈଜ୍ଞାନିକଂକର ସ୍ୱଦେଶ ପ୍ରେମ ସଂପର୍କରେ ବିଭିନ୍ନ ସନ୍ଦେହଜନକ ପ୍ରଶ୍ନ ଉତ୍‌ଥାପନ କରିଥିଲେ ।

ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ନିଜ ଦଳରେ ସଭ୍ୟମାନଂକର ସମାଲୋଚନାରେ ଆଦୌ ବିଚଳିତ ହୋଇନଥିଲେ ବରଂ ଉକ୍ତ ବୈଜ୍ଞାନିକଙ୍କୁ ଖୁବ୍ ଶୀଘ୍ର ବୈଜ୍ଞାନିକ ଉପଦେଷ୍ଟା ଦାୟିତ୍ୱ ଗ୍ରହଣ କରିବାପାଇଁ ଅନୁରୋଧ କରିଥିଲେ । ଚର୍ଚ୍ଚିଲ ତାଂକର ଏହି ନୀତିଗତ ନିଷ୍ପତ୍ତି ସଂପର୍କରେ ମତାମତ ଦେବାକୁ ଯାଇ କହିଥିଲେ ଯେ ବ୍ରିଟିଶ ସରକାରଂକର ବିଜ୍ଞାନ ଉପଦେଷ୍ଟା ଭାବରେ ନିଯୁକ୍ତି ଦେବାପାଇଁ ସେ ଜଣେ ବହୁମୁଖୀ ପ୍ରତିଭା ସଂପନ୍ନ ବୈଜ୍ଞାନିକଂକର ଅନୁସନ୍ଧାନ କରୁଥିଲେ । ବ୍ରିଟେନରେ ସେ ସମୟରେ ଅନେକ ବିଶ୍ୱବିଖ୍ୟାତ ରସାୟନବିତ୍, ଜୀବବିଜ୍ଞାନବିତ୍, ପଦାର୍ଥ ବିଜ୍ଞାନବିତ୍ ରହିଥିଲେ, ମାତ୍ର ତାଂକ ଦୃଷ୍ଟିରେ କେବଳ ଜଣେ ମାତ୍ର ବୈଜ୍ଞାନିକ ଜନ୍ମନେଇଥିଲେ ଯାହାଙ୍କର ବିଜ୍ଞାନର ସବୁ ବିଭାଗ ସମ୍ପର୍କରେ ସ୍ପଷ୍ଟ ଧାରଣା ରହିଥିଲା । ସେହି ବୈଜ୍ଞାନିକ ଜଣକ ହେଉଛନ୍ତି ପ୍ରଫେସର

ହାଲଡ୍ରେନ୍ । ତେଣୁ ସେ ବ୍ରିଟିଶ ସରକାରଂକର ବୈଜ୍ଞାନିକ ଉପଦେଷ୍ଟା ଭାବରେ ଜଣେ ସୁଯୋଗ୍ୟ ବୈଜ୍ଞାନିକଂକୁ ମନୋନୀତ କରିଥିଲେ । ପ୍ରଫେସର ହାଲଡେନ ଜଣେ ବ୍ରିଟିଶ ନାଗରିକ ହୋଇଥିବାରୁ ତାଂକର ଶାସକ ଦଳର ରାଜନୈତିକ ଚିନ୍ତାଧାରା ସହ ମତପାର୍ଥକ୍ୟ ରହିଥିଲେ ମଧ୍ୟ ସେ ତାଂକର ସ୍ୱଦେଶପ୍ରେମକୁ ଅବିଶ୍ୱାସ କରନ୍ତି ନାହିଁ ବୋଲି ଚର୍ଚ୍ଚିଲ ନିଜର ମନ୍ତବ୍ୟ ପ୍ରକାଶ କରିଥିଲେ ।

ବାସ୍ତବ ଦୃଷ୍ଟିକୋଣରୁ ବିଚାର କରିବାକୁ ଗଲେ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ପ୍ରଫେସର ହାଲଡ୍ରେନଙ୍କୁ ବିଜ୍ଞାନ ଉପଦେଷ୍ଟାଭାବେ ନିଯୁକ୍ତି ଦେଇ ହାଲଡ୍ରେନଂକର ବୈଜ୍ଞାନିକ ଦୃଷ୍ଟିକୋଣକୁ ଉପଯୁକ୍ତ ସମ୍ମାନ ପ୍ରଦାନ କରିଥିଲେ । କାରଣ ପ୍ରଫେସର ହାଲଡେନ୍ ବିଂଶଶତାବ୍ଦିର ବିଶ୍ୱପ୍ରସିଦ୍ଧ ବୈଜ୍ଞାନିକମାନଂକ ମଧ୍ୟରେ ଅନ୍ୟତମ ଥିଲେ । ସେ ବିଜ୍ଞାନରେ କୌଣସି ସ୍ନାତକୋତ୍ତର କିମ୍ୱା ଡ଼କ୍ଟରେଟ୍ ଉପାଧି ନେଇ ନଥିଲେ ମାତ୍ର ତାଂକର କଠୋର ଅଧ୍ୟବସାୟ ଓ ପ୍ରଚେଷ୍ଟା ବଳରେ ସେ ପ୍ରାଣୀ ଓ ଉଦ୍ଭିଦ ବିଜ୍ଞାନର ବିଭିନ୍ନ ବିଭାଗରେ ଉଚ୍ଚକୋଟୀର ଗବେଷଣା କରି ଜଣେ ଅସାଧାରଣ ଜୀବବିଜ୍ଞାନବିତ୍ ହିସାବରେ ପରିଚିତ ହୋଇପାରିଥିଲେ । ପ୍ରଫେସର ହାଲଡେନ୍ ଜୀବବିଜ୍ଞାନ, ଗଣିତଶାସ୍ତ୍ର, ଆନୁବଂଶିକୀ ବିଜ୍ଞାନ, ଶରୀରତତ୍ତ୍ୱ, ଜୈବ ରସାୟନ, ବିବର୍ତ୍ତନବାଦ, ପରିସଂଖ୍ୟାନ ଶାସ୍ତ୍ର ଇତ୍ୟାଦି ବିଭାଗରେ ଅନେକ ନୂତନ ତଥ୍ୟ ପ୍ରଦାନ କରିବା ସଂଗେ ସଂଗେ ଭବିଷ୍ୟତ ଗବେଷଣା ପାଇଁ ନୂତନ ଦିଗ ବିଷୟରେ ଦିଗ୍‌ଦର୍ଶନ ଦେବାକୁ ସକ୍ଷମ ହୋଇଥିଲେ ।

ପ୍ରଫେସର ହାଲଡ୍ରେନ୍ ଯେ କେବଳ ଜଣେ ସୁପ୍ରସିଦ୍ଧ ବୈଜ୍ଞାନିକ ଥିଲେ ତା ନୁହେଁ ସେ ଏକାଧାରରେ ଜଣେ ବୈଜ୍ଞାନିକ, ରାଜନୀତିଜ୍ଞ , ବିଶ୍ୱ ପରିଭ୍ରମଣକାରୀ, ସଂପାଦକ, ସମୀକ୍ଷକ, ଦୁଃସାହସୀ ଗବେଷକ, ବିଜ୍ଞାନର ପ୍ରଚାରକ, ଦାର୍ଶନିକ ଭାବରେ ଖ୍ୟାତି ଲାଭ କରିଥିଲେ । ବ୍ରିଟେନର ଏକ ସଂଭ୍ରାନ୍ତଶାଳୀ ପରିବାରରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ସେ ବ୍ରିଟେନର ଆଭିଜାତ୍ୟ ଶ୍ରେଣୀର ଲୋକମାନଂକ ଭଳି ଜୀବନଯାପନ କରିବାକୁ ପସନ୍ଦ କରିନଥିଲେ । ବିଶିଷ୍ଟ ବୈଜ୍ଞାନିକ ଡକ୍ଟର ହ୍ୱାଇଟଙ୍କ ମତରେ ହାଲଡ୍ରେନ୍ ତତ୍‌କାଳିନ ବ୍ରିଟିଶ ପରମ୍ପରାକୁ ଘୋର ବିରୋଧ କରୁଥିଲେ ଏବଂ ସାମାଜିକ ଓ ରାଜନୈତିକ ଦୃଷ୍ଟିକୋଣରୁ ଜେରେମି ବେନ୍ଥାମ, ସିଟଓ୍ୱେଲ, ବର୍ଟାଣ୍ଡ ରସେଲ ଇତ୍ୟାଦି ବିଶିଷ୍ଟ ବ୍ୟକ୍ତିମାନଂକ ଗୋଷ୍ଠୀ ଭିତରେ ତାଂକୁ ଗଣନା କରାଯାଇ ପାରେ । ବୈଜ୍ଞାନିକ ଦୃଷ୍ଟି କୋଣରୁ ବିଚାରକଲେ ସେ ଜଣେ ପ୍ରସିଦ୍ଧ ଗବେଷକ

ନଥିଲେ ମାତ୍ର କଠୋର ଅଧ୍ୟବସାୟ ବଳରେ ସେ ଚବିଶଟି ବୈଜ୍ଞାନିକ ପୁସ୍ତକ, ଚାରିଶହରୁ ଉର୍ଦ୍ଧ୍ୱ ବୈଜ୍ଞାନିକ ନିବନ୍ଧ ଏବଂ ଏକହଜାରରୁ ଉର୍ଦ୍ଧ୍ୱ ବୈଜ୍ଞାନିକ ଚିନ୍ତାଧାରାଯୁକ୍ତ ନିବନ୍ଧ ପ୍ରକାଶ କରି ବିଜ୍ଞାନ ଜଗତରେ ଏକ ନୂତନ ରେକର୍ଡ଼ ପ୍ରତିଷ୍ଠା କରିଯାଇଛନ୍ତି । ତାଂକର ବାସ୍ତବାଭିମୁଖୀ ବୈଜ୍ଞାନିକ ଚିନ୍ତାଧାରା ଓ ଦୃଷ୍ଟିକୋଣ ଯୋଗୁଁ ସେ ଆନୁବଂଶିକୀ ବିଜ୍ଞାନରେ ତିନୋଟି ନୂତନ ବିଭାଗ ସୃଷ୍ଟି କରିବାପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ପ୍ରେରଣା ଦେଇ ପାରିଥିଲେ ।

କେତେକ ବୈଜ୍ଞାନିକ ମତ ଦିଅନ୍ତିଯେ ହାଲ୍‌ଡ଼େନ ଜଣେ ବୁଦ୍ଧିମାନ ବ୍ୟକ୍ତି ହେଲେ ମଧ୍ୟ ତାଂକର ଜୀବନକାଳ ମଧ୍ୟରେ କୌଣସି ଏକ ନୂତନ ବୈଜ୍ଞାନିକ ଉଦ୍ଭାବନ କରିବାକୁ ସକ୍ଷମ ହୋଇପାରିନଥିଲେ । ଏହାର କାରଣ ହେଲା ହାଲଡ଼େନ ବିଶ୍ୱବିଦ୍ୟାଳୟରୁ ନିଜର ଶିକ୍ଷା ଶେଷ କଲାବେଳକୁ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥିଲା ଏବଂ ସେ ଜଣେ ବ୍ରିଟିଶ ଅଫିସର ଭାବରେ ଯୁଦ୍ଧରେ ଯୋଗଦେଇଥିଲେ । ସେ ନିଜର କର୍ମକ୍ଷେତ୍ରରେ ଯୋଗଦେଲା ପରେପରେ ଭୟାବହ ଦ୍ୱିତୀୟ ବିଶ୍ୱଯୁଦ୍ଧର ସୂତ୍ରପାତ ହୋଇଥିଲା । ଏଣୁ ଭୟାବହ ବିଶ୍ୱଯୁଦ୍ଧ ଦ୍ୱୟର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କାଳର ବ୍ରିଟିଶ ରାଜନୈତିକ ଓ ସାମାଜିକ ବ୍ୟବସ୍ଥା ମଧ୍ୟରେ ହାଲଡେନଙ୍କ କର୍ମମୟ ଜୀବନର ଅନେକାଂଶ ଅତିବାହିତ ହୋଇଯାଇଥିଲା । ହାଲଡେନଂକର ବୈଜ୍ଞାନିକ ଚିନ୍ତାଧାରା ସମସାମୟିକ ବୈଜ୍ଞାନିକମାନଂକ ଠାରୁ ସଂପୂର୍ଣ୍ଣ ଭିନ୍ନ ଥିଲା । ହାଲଡେନ ନିଜେ କରୁଥିବା ବୈଜ୍ଞାନିକ ଗବେଷଣା ଉପରେ ଯେତିକି ଗୁରୁତ୍ୱ ଦେଉଥିଲେ ତା ଅପେକ୍ଷା ଅନ୍ୟମାନଂକର ଗବେଷଣା କିଭଳି ଭାବରେ ଭଲ ହୋଇପାରିବ ସେଥିପ୍ରତି ଅଧିକ ଦୃଷ୍ଟି ଦେଉଥିଲେ । ନିଜର ତୀକ୍ଷ୍ଣ ବୁଦ୍ଧି ଓ ପ୍ରଖର ସ୍ମରଣ ଶକ୍ତି ଯୋଗୁଁ ସେ ଅନେକ ବୈଜ୍ଞାନିକ ତଥ୍ୟ ମନେରଖିପାରୁଥିଲେ । ଏପରିକି ପୃଥିବୀର ଅନାମଧେୟ ସ୍ଥାନରେ ହୋଇଥିବା ଗବେଷଣା ଓ ସାଧାରଣ ପାଠାଗାରରେ ଉପଲବ୍ଧ ହେଉନଥିବା ବୈଜ୍ଞାନିକ ପତ୍ରିକାରେ ପ୍ରକାଶିତ ଗବେଷଣା ସଂପର୍କରେ ସେ ଅବଗତ ଥିଲେ । ଏଥିଯୋଗୁଁ ତାଂକ ସହ ଆଲୋଚନାକରି ତାଂକର ବିଭିନ୍ନ ଦିଗ ସଂପର୍କରେ ସହଜରେ ଜାଣି ପାରୁଥିଲେ ।

ପ୍ରଫେସର ହାଲଡେନ ଯେ ବୈଜ୍ଞାନିକ ଗବେଷଣା ଓ ଶିକ୍ଷା ଦିଗରେ ପ୍ରତିଷ୍ଠା ଲାଭ କରିଥିଲେ ତା ନୁହେଁ ଏତଦ୍‌ବ୍ୟତୀତ ବିଶ୍ୱ ସମ୍ମୁଖରେ ଜଣେ ଦୁଃସାହସୀ ଗବେଷକ ଭାବରେ ଖ୍ୟାତିଲାଭ କରିଥିଲେ । ବ୍ରିଟିଶ୍ ନୌବାହିନୀ ସବମେରାଇନ ଏଚ.ଏମ୍.ଏସ. ଥେଟିସ ଯୁଦ୍ଧରେ କ୍ଷତିଗ୍ରସ୍ତ ହୋଇ

ବୁଡ଼ିଗଲାପରେ ସେ କେତେଜଣ ସ୍ୱେଚ୍ଛାସେବୀଙ୍କ ସହ ଏକ ରୁଦ୍ଧକୋଠରୀରେ ଅଠଚାଳିଶ ଘଣ୍ଟାକାଳ ଅତିବାହିତ କରିଥିଲେ । ତାଂକର ଉଦ୍ଦେଶ୍ୟ ଥିଲା, ସବମେରାଇନ୍ ବୁଡ଼ିଗଲା ବେଳେ ଶ୍ୱାସରୁଦ୍ଧ ଅବସ୍ଥାରେ ମଣିଷ ଶରୀରରେ କି କି ପରିବର୍ତ୍ତନ ହୁଏ ସେ ସଂପର୍କରେ ଅନୁଧ୍ୟାନ କରିବା । ଏହିଭଳି ସବମେରାଇନ ଦୁର୍ଘଟଣା ନୌବାହିନୀର ସୈନିକମାନେ ଗଭୀର ଜଳମଧ୍ୟରୁ କିଭଳି ରକ୍ଷାପାଇପାରିବେ ସେ ସଂପର୍କରେ ସେ ନିଜଉପରେ ଅନେକ ଗବେଷଣା କରିଥିଲେ ଏବଂ ଦୁର୍ଭାଗ୍ୟ ବଶତଃ ଆଘାତପ୍ରାପ୍ତ ହୋଇ ଜୀବନର ଶେଷପର୍ଯ୍ୟନ୍ତ କଷ୍ଟ ଭୋଗ କରିଥିଲେ । ମାତ୍ର ତାଂକର ଦୁଃସାହସିକ ଗବେଷଣା ତାଂକୁ ଜଣେ ବିଶ୍ୱପ୍ରସିଦ୍ଧ ଗବେଷକ ଭାବରେ ସ୍ୱୀକୃତି ପ୍ରଦାନ କରାଇ ପାରିଥିଲା ।

ହାଲ୍‌ଡେନଙ୍କର ରାଜନୈତିକ ଚିନ୍ତାଧାରା ସଂପର୍କରେ ଆଲୋଚନା କରିବାକୁ ଯାଇ ପ୍ରଫେସର ହ୍ୱାଇଟ କହନ୍ତି ଯେ, ହାଲଡେନ ଜଣେ ଅଶାନ୍ତ ଓ ଅସ୍ୱାଭାବିକ ପ୍ରକୃତିର ବ୍ୟକ୍ତିଥିଲେ । କୌଣସି ପ୍ରଚଳିତ ପରମ୍ପରାକୁ ସେ ସମ୍ପୂର୍ଣ୍ଣ ଭାବରେ ଗ୍ରହଣ କରିପାରୁନଥିଲେ । ବ୍ରିଟେନର ତଥାକଥିତ ଆଭିଜାତ୍ୟ ପରିବାରରେ ଜନ୍ମ ନେଇଥିଲେ ମଧ୍ୟ ପ୍ରଫେସର ହାଲଡେନ ନିଜକୁ ଜଣେ କମ୍ୟୁନିଷ୍ଟ ବୋଲି ଘୋଷଣା କରିଥିଲେ । ରାଜନୈତିଜ୍ଞ ମାନେ ମତଦିଅନ୍ତି ଯେ ସେ ଜଣେ ଅନୁରକ୍ତ କମ୍ୟୁନିଷ୍ଟ ଥିଲେ । କିନ୍ତୁ କାଳକ୍ରମେ କମ୍ୟୁନିଷ୍ଟ ଚିନ୍ତାଧାରାଠାରୁ ମଧ୍ୟ ସେ ଦୂରେଇ ଯାଇଥିଲେ । ସେ ୧୯୫୭ ମସିହାରେ ସ୍ୱଇଚ୍ଛାରେ ଭାରତକୁ ଦେଶାନ୍ତରିତ ହେଲାପରେ ତାଂକର ରାଜନୈତିକ କାର୍ଯ୍ୟକଳାପ ସଂପୂର୍ଣ୍ଣଭାବରେ ବନ୍ଦହୋଇଯାଇଥିଲା । ତାଂକର ରାଜନୈତିକ ଜୀବନ ସଂପର୍କରେ ତାଂକର ଛାତ୍ର ଦ୍ରୋଣମରାଜୁ ଲେଖିଛନ୍ତି ଯେ ହାଲଡେନ ରାଜନୀତିକୁ ପସନ୍ଦ କରୁଥିଲେ ମାତ୍ର ସେ ତାଂକର ଛାତ୍ରମାନଂକ ଗହଣରେ କେବେହେଲେ ରାଜନୀତି ସଂପର୍କରେ ଆଲୋଚନା କରୁନଥିଲେ କିମ୍ବା ନିଜର ରାଜନୈତିକ ଚିନ୍ତାଧାରା ଉପରେ ଆଧାର କରି କୌଣସି ନିଷ୍ପତ୍ତି ନେବାକୁ ପସନ୍ଦ କରୁନଥିଲେ ।

ବିଶ୍ୱବିଖ୍ୟାତ ବୈଜ୍ଞାନିକ ହାଲଡେନ ତାଂକ ଜୀବନର ଶେଷ ତିରିଶି ବର୍ଷକାଳରେ ଜଣେ ରୁକ୍ଷ ସ୍ୱଭାବର ବ୍ୟକ୍ତି ଭାବରେ ପରିଚିତ ଥିଲେ । ତାଂକର ଉଚ୍ଚତା ଛଅଫୁଟରୁ ଅଧିକ ହେବା ସଂଗେସଂଗେ ଓଜନ ପ୍ରାୟ ଅଢ଼େଇଶହ ପାଉଣ୍ଡରୁ ଅଧିକ ଥିଲା । ମୁଣ୍ଡରେ ବାଳ ଉପୁଡ଼ି ଯାଇ ଥିବାରୁ ସେ ଚନ୍ଦା ହୋଇଯାଇଥିଲେ । ଏଣୁ ସେ ଯେତେବେଳେ କ୍ରୋଧ ପ୍ରକାଶ କରୁଥିଲେ ସେତେବେଳେ ଖୁବ୍‌ଭୟଂକର ଦେଖାଯାଉଥିଲେ । ତାଂକର ସହକର୍ମୀ

ଓ ଛାତ୍ରମାନେ ଅନେକ ସମୟରେ ଛୋଟଛୋଟ ଭୁଲପାଇଁ ତାଂକର କ୍ରୋଧର ସମ୍ମୁଖୀନ ହୋଇଥିଲେ । ମାତ୍ର ପ୍ରଫେସର ହାଲଡେନଙ୍କୁ ତାଂକର ଏହି କ୍ରୋଧପାଇଁ କେହି କେବେ ନିନ୍ଦା କରିନାହାନ୍ତି । ବରଂ ପ୍ରତ୍ୟେକ ସ୍ତରରେ ସେ ଶ୍ରଦ୍ଧା ଓ ଭକ୍ତିର ସହିତ ସମ୍ମାନିତ ହୋଇଛନ୍ତି । ଏହାର ମୁଖ୍ୟ କାରଣ ହେଲା ପ୍ରଫେସର ହାଲଡେନ ତାଂକର ସମସାମୟିକ ବୈଜ୍ଞାନିକ ଓ ପ୍ରଫେସରମାନଂକ ଭଳି ସଂକୀର୍ଣ୍ଣମନା ନଥିଲେ । ସେ ପ୍ରତ୍ୟେକଂକର ଚିନ୍ତାଧାରାକୁ ସମ୍ମାନ ଦେଉଥିଲେ ଏବଂ ଧୀର ସ୍ଥିର ଭାବରେ ଶୁଣିବା ସହ ବିଶ୍ଳେଷଣ ମଧ୍ୟ କରୁଥିଲେ ଏବଂ ନିଜର ସୁଚିନ୍ତିତ ମତାମତ ପ୍ରକାଶ କରୁଥିଲେ । ଏହି କାରଣ ଯୋଗୁଁ ତାଂକ ନିକଟକୁ ଅନେକ ବୈଜ୍ଞାନିକ ନିବନ୍ଧ ଓ ପୁସ୍ତକ ସମୀକ୍ଷା କରିବା ପାଇଁ ବୈଜ୍ଞାନିକ ଓ ଗବେଷକମାନେ ପଠାଉଥିଲେ ।

ପ୍ରଫେସର ହାଲଡେନ ବ୍ରିଟେନ ଛାଡ଼ିଲା ପରେ କଲିକତାସ୍ଥିତ ଭାରତୀୟ ପରିସଂଖ୍ୟାନ ସଂସ୍ଥାରେ ଯୋଗଦେଇଥିଲେ ଏବଂ ୧୯୬୧ ମସିହାରେ ଭାରତର ନାଗରିକତ୍ୱ ଗ୍ରହଣ କରିଥିଲେ । ପରବର୍ତ୍ତୀ କାଳରେ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଂକର ଅନୁରୋଧକ୍ରମେ ସେ ଓଡ଼ିଶା କୃଷି ମହାବିଦ୍ୟାଳୟର ପରିସର ମଧ୍ୟରେ "ଜେନେଟିକସ ଓ ବାଇଓମେଟ୍ରି ଲାବୋରେଟୋରୀ" ପ୍ରତିଷ୍ଠା କରିଥିଲେ । ଓଡ଼ିଶାର ଜଳବାୟୁ, ବୈଚିତ୍ର୍ୟମୟ ପ୍ରାକୃତିକ ପରିବେଶ ଓ ସାଂସ୍କୃତିକ ପରମ୍ପରା ତାଂକୁ ମୁଗ୍ଧ କରିଥିଲା । ଓଡ଼ିଶା ସଂପର୍କରେ ମତଦେବାକୁ ଯାଇ ହାଲଡ଼େନ୍ କହିଥିଲେ ଯେ "ଓଡ଼ିଶାରେ ମୁଁ ମୋର ଅନେକ ଗୁଡ଼ିଏ ଚିନ୍ତାଧାରା ଉପରେ ଭିତ୍ତିକରି ଗବେଷଣା କରିବାକୁ ସୁଯୋଗ ପାଇପାରିଛି ।" ହାଲ୍‌ଡ଼େନ୍ ଓଡ଼ିଶାରେ ଅନେକ ବୈଜ୍ଞାନିକ ଚିନ୍ତାଧାରାକୁ କାର୍ଯ୍ୟକାରୀ କରିବାପାଇଁ ଚାହିଁଥିଲେ ମାତ୍ର ସେ କର୍କଟରୋଗରେ ଆକ୍ରାନ୍ତ ହୋଇ ୧୯୬୪ମସିହା ଡିସେମ୍ବର ୧ତାରିଖ ଦିନ ଇହଲୀଳା ସମ୍ବରଣ କରିଥିଲେ । ମୃତ୍ୟୁବେଳକୁ ତାଂକୁ ୭୨ ବର୍ଷ ବୟସ ହୋଇଥିଲା । ଏକ ଦୀର୍ଘ କର୍ମମୟ ଜୀବନର ଅବସାନ ଘଟିଲା ।

ବିଜ୍ଞାନ ଜଗତକୁ ତାଂକର ଅବଦାନ ପାଇଁ ପ୍ରଫେସର ହାଲଡେନ ଆନ୍ତର୍ଜାତିୟ ସ୍ତରରେ ଅନେକ ଗୁଡ଼ିଏ ସମ୍ମାନଜନକ ପୁରସ୍କାରର ଅଧିକାରୀ ହୋଇପାରିଥିଲେ । ତାଂକ ମୃତ୍ୟୁର ବାର୍ତ୍ତା ପୃଥିବୀର ସମସ୍ତ ପ୍ରମୁଖ ସମ୍ବାଦପତ୍ର ଓ ଗଣମାଧ୍ୟମ ଦୁଃଖର ସହ ପ୍ରଚାର କରିଥିଲେ । ବିଶ୍ୱର ବିଶିଷ୍ଟ ସମ୍ବାଦପତ୍ର ନିଉୟର୍କ ଟାଇମସ୍ ପ୍ରଫେସର ହାଲଡେନଙ୍କର କାର୍ଯ୍ୟକଳାପର ଭୂୟସୀ ପ୍ରଶଂସା କରିବା ସଂଗେସଂଗେ ତାଂକୁ "ବିଜ୍ଞାନ ଜଗତର ଋଷି" ନାମରେ ଅଭିହିତ କରି ଯଥୋଚିତ ସମ୍ମାନ ପ୍ରଦାନ କରିଥିଲା ।

# ୨

# ବାଲ୍ୟଜୀବନ

୧୮୯୨ ମସିହା ନଭେମ୍ବର ୫ତାରିଖ ଦିନ ଜୋହନ୍ ବରଡନ୍ ସାଣ୍ଡରସନ୍ ହାଲଡେନ୍ ଅକ୍ସଫୋର୍ଡ ସହରର ଏକ ସମ୍ଭ୍ରାନ୍ତଶାଳୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ହାଲଡେନଙ୍କର ପରିବାରର ସଦସ୍ୟମାନେ ବ୍ରିଟେନର ଆଭିଜାତ୍ୟ ସମ୍ପନ୍ନ ବ୍ୟକ୍ତି ମାନଂକ ମଧ୍ୟରେ ଗଣାଯାଉଥିଲେ । ହାଲଡେନଙ୍କର ପିତା ଜନ ସ୍କଟ ହାଲଡେନ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ମାନବୀୟ ଶରୀରତତ୍ତ୍ୱ ବିଭାଗରେ ପ୍ରଫେସର ରୂପେ କାର୍ଯ୍ୟ କରୁଥିଲେ । ତାଂକର ପ୍ରଚେଷ୍ଟା ଫଳରେ ମଣିଷର ଶ୍ୱାସକ୍ରିୟାକୁ ରକ୍ତରେ ଥିବା ହିମୋଗ୍ଲୋବିନ ଓ ଅଂଗାରକାମ୍ଳ ଗ୍ୟାସର ପରିମାଣ କିଭଳି ଭାବରେ ନିୟନ୍ତ୍ରିତ କରୁଛି ସେ ସଂପର୍କୀୟ ଗବେଷଣା ପ୍ରଥମ କରି ଆରମ୍ଭ ହୋଇଥିଲା । ଏତଦ୍ ବ୍ୟତୀତ ଗଭୀର କୋଇଲାଖଣିର ପ୍ରବଳ ତାପ ଓ ଚାପ ମଧ୍ୟରେ ଖଣି ଶ୍ରମିକମାନେ କିଭଳି ସୁରକ୍ଷିତ ଭାବରେ କାର୍ଯ୍ୟ କରିପାରିବେ ସେ ସମ୍ବନ୍ଧରେ ବିଭିନ୍ନ ତଥ୍ୟ ପ୍ରଦାନ କରି ସେ ବୈଜ୍ଞାନିକ ମହଲରେ ସୁନାମ ଅର୍ଜନ କରିଥିଲେ । ତାଂକର ଦାଦା ଜୋହନ ବରଡନ୍ ସାଣ୍ଡରସନ୍ ମଧ୍ୟ ଜଣେ ସୁପ୍ରତିଷ୍ଠିତ ପ୍ରାଣୀବିଜ୍ଞାନର ପ୍ରଫେସର ଭାବରେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟକରୁଥିଲେ । ଜନ୍ ସ୍କଟ୍ ହାଲଡେନ ଓ ଜୋହନ୍ ବରଡନ୍ ସାଣ୍ଡରସନ୍ ଉଭୟ ବ୍ରିଟେନର ରୟଲ ସୋସାଇଟି ର ଫେଲୋ ଭାବେ ନିର୍ବାଚିତ ହୋଇ ସମ୍ମାନ ଲାଭ କରିଥିଲେ ।

ହାଲଡେନଂକର ଦାଦା ଭିସ୍‌କାଉଣ୍ଟ ହାଲ୍‌ଡେନ୍ ଜଣେ ପ୍ରସିଦ୍ଧ ବ୍ରିଟିଶ ରାଜନିତିଜ୍ଞ ଥିଲେ । ସେ ବ୍ରିଟିଶ ପାର୍ଲିଆମେଣ୍ଟର ସଦସ୍ୟ ହେବା ସଂଗେ ସଂଗେ ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ପ୍ରଧାନମନ୍ତ୍ରୀ ଏସକୁଇଥଙ୍କ ମନ୍ତ୍ରି ମଣ୍ଡଳରେ ଯୁଦ୍ଧ ସମ୍ବନ୍ଧୀୟ ସେକ୍ରେଟେରୀ ଭାବେ କାର୍ଯ୍ୟକରିଥିଲେ । ହାଲଡେନଙ୍କର ଅପା ଏଲିଜାବେଥ ହାଲଡେନ୍ ବ୍ରିଟେନର ସମାଜସେବୀ ସଂଗଠନରେ କାର୍ଯ୍ୟକରିବା ସଂଗେସଂଗେ ଜଣେ ଲେଖିକା ଭାବରେ ପରିଚିତ ଥିଲେ । ହାଲ୍‌ଡେନ୍ ପରିବାରର ସଦସ୍ୟମାନେ ବ୍ରିଟେନର ମର୍ଯ୍ୟାଦାପୂର୍ଣ୍ଣ ପଦପଦବୀରେ ଅବସ୍ଥାପିତ ହୋଇଥିବାରୁ ପାରିବାରିକ ବାତାବରଣ ହାଲଡେନ୍‌ଙ୍କର ବାଲ୍ୟଜୀବନକୁ ବିଶେଷଭାବରେ ପ୍ରଭାବିତ କରିଥିଲା ।

ହାଲଡେନ୍‌ଙ୍କର ପିଲାଦିନର ନାମ ଥିଲା ଜ୍ୟାକ୍ । ଜ୍ୟାକ୍ ହାଲଡେନ୍ ନାମରେ ସେ ପରିବାର ମଧ୍ୟରେ ଓ ବିଦ୍ୟାଳୟ ପରିସରରେ ଜଣାଶୁଣା

ଥିଲେ । ହାଲଡେନ୍‌ଙ୍କର ପିତା ବାଲ୍ୟକାଳରୁ ହାଲଡେନଙ୍କର ଶିକ୍ଷାର ଦାୟିତ୍ୱ ନେଇଥିଲେ ଏବଂ ହାଲଡେନଙ୍କୁ ଜଣେ ବୈଜ୍ଞାନିକ ରୂପେ ଗଢ଼ିବାପାଇଁ ପ୍ରୟାସ କରିଥିଲେ । ଏକ ବୈଜ୍ଞାନିକ ପରିବାରରେ ଜନ୍ମଗ୍ରହଣ କରିଥିବାରୁ ହାଲଡେନ ଏକ ବିଜ୍ଞାନ ପରିବେଶ ମଧ୍ୟରେ ବାଲ୍ୟଜୀବନ ଅତିବାହିତ କରିଥିଲେ । ପିତା ଏବଂ ଦାଦାଂକର ବୈଜ୍ଞାନିକ ଗବେଷଣା ଓ ବିଶିଷ୍ଟ ବୈଜ୍ଞାନିକମାନଂକ ସହ ବିଜ୍ଞାନ ସଂପର୍କରେ ଆଲୋଚନା ତାଂକର ଚପଳ ମନଉପରେ ଗଭୀର ପ୍ରଭାବ ପକାଇଥିଲା । ତାଂକର ପିତା ତାଂକୁ ବେଳେ ବେଳେ ବିଜ୍ଞାନଗାରକୁ ସଂଗରେ ନେଇଯାଉଥିଲେ ଏବଂ ଗବେଷଣାଗାରରେ ଚାଲିଥିବା ଗବେଷଣାକୁ ଦେଖିବାକୁ ହାଲ୍‌ଡେନଙ୍କୁ ସୁଯୋଗ ଦେଉଥିଲେ । ହାଲଡେନ ମନ୍ତ୍ରମୁଗ୍ଧ ହୋଇ ସେସବୁକୁ ପର୍ଯ୍ୟବେକ୍ଷଣ କରୁଥିଲେ । ବୟସ ବଢ଼ିବା ସଂଗେସଂଗେ ତାଂକର ପର୍ଯ୍ୟବେକ୍ଷଣ ଶୈଳୀ ମଧ୍ୟ ବଦଳି ଯାଇଥିଲା । ଏବଂ ବିଭିନ୍ନ ସମୟରେ ପିତାଂକୁ ବାଳସୁଲଭ ପ୍ରଶ୍ନ ପଚାରିବାକୁ ଆରମ୍ଭ କରିଥିଲେ । ତାଂକର ପିତା ସରଳ ଭାବରେ ପ୍ରତ୍ୟେକ ପ୍ରଶ୍ନର ଉତ୍ତର ହାଲଡେନଙ୍କୁ ବୁଝାଇ ତାଂକର ମନରେ ବିଜ୍ଞାନ ପ୍ରତି ଆଗ୍ରହ ସୃଷ୍ଟି କରାଇ ପାରିଥିଲେ ।

ପିତାଂକ ବୈଜ୍ଞାନିକ ଗବେଷଣା ହାଲଡେନଙ୍କ ମନରେ ସବୁବେଳେ ନୂତନ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟିକରୁଥିଲା । ଏହି ଉତ୍ସାହକୁ ଜାଗରଣ କରିବା ପାଇଁ ତାଂକର ପିତା ତାଂକୁ ବିଜ୍ଞାନ ଗବେଷଣାରେ ସାହାଯ୍ୟ କରିବା ପାଇଁ ପ୍ରବର୍ତ୍ତାଉଥିଲେ । ହାଲଡେନଙ୍କୁ ଯେତେବେଳେ ମାତ୍ର ଆଠ ବର୍ଷ ବୟସ ହୋଇଥିଲା ସେତେବେଳେ ତାଂକର ପିତା ତାଂକୁ ଗଭୀର ଖଣି ଭିତରକୁ ନେଇ ଶ୍ୱାସକ୍ରିୟା ସଂପର୍କୀୟ ଗବେଷଣାରେ ସାହାଯ୍ୟ କରିବାପାଇଁ ସୁଯୋଗ ଦେଇଥିଲେ । ପରବର୍ତ୍ତୀକାଳରେ ହାଲଡେନ ନିଜେ ସ୍ୱୀକାର କରିଥିଲେ ଯେ ତାଂକର ପିତା ବୈଜ୍ଞାନିକ ଗବେଷଣା କରିବା ପାଇଁ ତାଂକ ପ୍ରାଣଭିତରେ ଆତ୍ମ ବିଶ୍ୱାସ ଭରିଦେଇଥିଲେ ଏବଂ ତାକୁ ପାଥେୟ କରି ସେ ବୈଜ୍ଞାନିକ ଚିନ୍ତାଧାରା ପ୍ରକାଶ କରିବାପାଇଁ ସଫଳ କାମ ହୋଇପାରିଥିଲେ ।

ହାଲଡେ଼ନଙ୍କର ବାଲ୍ୟଶିକ୍ଷା ଅକସଫୋର୍ଡ଼ ସହରର ଡ୍ରାଗନ ମହାବିଦ୍ୟାଳୟରେ ଆରମ୍ଭ ହୋଇଥିଲା । ତାଂକର ପ୍ରଖର ସ୍ମରଣ ଶକ୍ତି ଓ ଶିକ୍ଷା ପ୍ରତି ଆଗ୍ରହ ଯୋଗୁଁ ସେ ମହାବିଦ୍ୟାଳୟରେ ଗଣିତ, ଜ୍ୟାମିତି ଓ ଲାଟିନ୍ ଭାଷାରେ ପ୍ରଥମ ସ୍ଥାନ ଅଧିକାର କରି ଛାତ୍ରବୃତ୍ତି ପାଇବାକୁ ସକ୍ଷମ ହୋଇଥିଲେ ।

ଡ୍ରାଗନ ମହାବିଦ୍ୟାଳୟରୁ ଶିକ୍ଷା ସମାପ୍ତ କରି ସେ ଏଟନ୍ ମହାବିଦ୍ୟାଳୟରେ ଯୋଗ ଦେଇ ରସାୟନ ବିଜ୍ଞାନ, ପ୍ରାଣୀ ବିଜ୍ଞାନ ଓ ପଦାର୍ଥ ବିଜ୍ଞାନ ବିଷୟରେ

ଅଧ୍ୟୟନ କରିଥିଲେ । ଏତଦ୍ ବ୍ୟତୀତ ସେ ଜର୍ମାନ, ଫ୍ରେଞ୍ଚ ଓ ଲାଟିନ୍ ଭାଷା ମଧ୍ୟ ଅଧ୍ୟୟନ କରିଥିଲେ । ହାଲଡେନଙ୍କର ଏତେଗୁଡ଼ିଏ ବିଷୟ ପ୍ରତି ଆଗ୍ରହ ଦେଖି ମହାବିଦ୍ୟାଳୟର ଅଧ୍ୟକ୍ଷ ତାଂକୁ ନିରୁତ୍ସାହିତ କରି କହିଥିଲେ ଯେ ସେ ଭବିଷ୍ୟତରେ ଜଣେ ସାମାନ୍ୟଜ୍ଞାନ ବିଶିଷ୍ଟ ବ୍ୟକ୍ତି ହେବେ ଏବଂ କୌଣସି ବିଷୟରେ ସାଧାରଣସ୍ତରଠାରୁ ଅଧିକ ଜ୍ଞାନ ଆହରଣ କରିବାକୁ ସକ୍ଷମ ହୋଇପାରିବେ ନାହିଁ । କିନ୍ତୁ ହାଲଡେନଙ୍କର ପିତା ହାଲଡେନଙ୍କୁ ନିରୁତ୍ସାହିତ କରିବା ପରିବର୍ତ୍ତେ ସମସ୍ତ ବିଷୟରେ ସବିଶେଷ ଜ୍ଞାନ ଆହରଣ କରିବାକୁ ଉତ୍ସାହ ପ୍ରଦାନ କରିଥିଲେ । ଏହାଫଳରେ ହାଲଡେନଙ୍କର ମନୋବଳ ଦ୍ୱିଗୁଣିତ ହୋଇ ଯାଇଥିଲା ଏବଂ ସେ କୃତିତ୍ୱର ସହ ସମସ୍ତ ବିଷୟରେ ଉତ୍ତୀର୍ଣ୍ଣ ହୋଇପାରିଥିଲେ । ଏତେଗୁଡିଏ ବିଷୟକୁ ଅଧ୍ୟୟନ କରିମଧ୍ୟ ସେ ସନ୍ତୁଷ୍ଟ ନଥିଲେ । ଅର୍ଥନୀତି, ମନୋବିଜ୍ଞାନ, ପ୍ରଯୁକ୍ତି ବିଦ୍ୟା ଇତ୍ୟାଦି ବିଷୟରେ ସେ ମହାବିଦ୍ୟାଳୟ ସ୍ତରରେ ପଢ଼ି ପାରିନଥିବା ଯୋଗୁଁ ପରବର୍ତ୍ତୀ କାଳରେ ସେ ଦୁଃଖ ପ୍ରକାଶ କରିଥିଲେ ।

ହାଲଡେନ ଜଣେ ମେଧାବୀ ଛାତ୍ର ଥିଲେ । କର୍ତ୍ତବ୍ୟନିଷ୍ଠା, କଠୋର ଅଧ୍ୟବସାୟ ଓ ପ୍ରଖର ସ୍ମରଣ ଶକ୍ତି ଯୋଗୁଁ ଅନେକ ଗୁଡ଼ିଏ ବିଷୟକୁ ଅଧ୍ୟୟନ କରିବା ସଂଗେସଂଗେ ସହଜରେ ମନେରଖି ପାରୁଥିଲେ । ସେ ପ୍ରତ୍ୟକ ବିଷୟକୁ ଭଲଭାବରେ ବୁଝିବାକୁ ଚେଷ୍ଟାକରୁଥିଲେ ଏବଂ ନିର୍ଭୀକତାର ସହ ଶିକ୍ଷକମାନଂକ ସହ ଆଲୋଚନା କରି ଅବୁଝା ବିଷୟକୁ ବୁଝିବାକୁ ଚେଷ୍ଟା କରୁଥିଲେ । ତାଂକର ଅତିମେଧାବୀତା ତାଂକୁ ଅନ୍ୟାନ୍ୟ ଛାତ୍ରମାନଂକଠାରୁ ଖୁବ୍ ଦୂରେଇ ଦେଇଥିଲା । ଏପରିକି କେତେକ ଶିକ୍ଷକ ତାଂକର ପ୍ରଶ୍ନବାଣରୁ ନିଜକୁ ଶୀଘ୍ର ଦୂରେଇ ଦେବାପାଇଁ ଚେଷ୍ଟାକରୁଥିଲେ । ମାତ୍ର ସେ ଶିକ୍ଷକ ଓ ଛାତ୍ର ମହଲରେ ନିଜର ବିଦ୍‌ବତ୍ତା ଲାଗି ପ୍ରଶଂସାପାତ୍ର ହୋଇପାରିଥିଲେ ।

ଏଟନଠାରେ ନିଜର ଶିକ୍ଷା ସମାପ୍ତି ପରେ ହାଲଡେନ୍ ଗଣିତ ଶାସ୍ତ୍ରରେ ବୃତ୍ତିଲାଭ କରିଥିଲେ ଏବଂ ଅକସ୍‌ଫୋର୍ଡ ବିଶ୍ୱବିଦ୍ୟାଳୟର ନିଉ କଲେଜରେ ଅଧ୍ୟୟନ କରିଥିଲେ । ନିଉକଲେଜଠାରେ ସେ ଗଣିତକୁ ମୁଖ୍ୟ ବିଷୟ ରୂପେ ନେଇଥିଲେ ମଧ୍ୟ ପ୍ରାଣୀବିଜ୍ଞାନ ସଂପର୍କରେ ଜ୍ଞାନ ଆହରଣ କରିବାପାଇଁ ସେ ପ୍ରଫେସର ଗୁଡ୍‌ରିକ୍‌ଙ୍କର ପ୍ରାଣୀବିଜ୍ଞାନ (ଅନର୍ସ) ଶ୍ରେଣୀରେ ବସୁଥିଲେ । ପ୍ରଫେସର ଗୁଡ୍‌ରିକ୍‌ଙ୍କର ପ୍ରଦତ୍ତ ଶିକ୍ଷା ଯୋଗୁଁ ପ୍ରାଣୀବିଜ୍ଞାନ ପ୍ରତି ତାଂକର ଆଗ୍ରହ ବୃଦ୍ଧି ପାଇଥିଲା ଏବଂ ସେ ପ୍ରାଣୀ ଓ ଉଦ୍ଭିଦ ଜଗତରେ ସୃଷ୍ଟି ସମ୍ବନ୍ଧରେ ଅଧିକ ଜାଣିବାପାଇଁ ଚେଷ୍ଟା କରିଥିଲେ ।

ଅକସଫୋର୍ଡ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ସେ ଗ୍ରେଗର୍ ମେଣ୍ଡେଲଙ୍କର ପ୍ରଣୀତ ଆନୁବଂଶିକୀ ସଂପର୍କୀୟ ନିୟମ ବିଷୟରେ ଜାଣିପାରିଥିଲେ ଏବଂ ଏହି ନିୟମ ସଂପର୍କରେ ଅଧିକ ଗବେଷଣା କରିବାକୁ ମନବଳାଇଥିଲେ । ତାଂକର ଭଉଣୀ ନାଓମି ହାଲେଡେନଙ୍କ ଦ୍ୱାରା ପାଳିତ ଗିନିପିଗ୍ ଗୁଡ଼ିକୁ ପର୍ଯ୍ୟବେକ୍ଷଣ କରି ସେ କେତେକ ନୂତନ ସିଦ୍ଧାନ୍ତରେ ଉପନୀତ ହେଲେ ଏବଂ ୧୯୧୧ ମସିହାରେ ଏକ ସେମିନାରରେ ସେ ଏହି ସିଦ୍ଧାନ୍ତଗୁଡ଼ିକୁ ଆଲୋଚନା କରି ସମସ୍ତଙ୍କୁ ଚମତ୍କୃତ କରିଦେଇଥିଲେ । ପରବର୍ତ୍ତୀକାଳରେ ତାଂକ ଦ୍ୱାରା ପ୍ରଦତ୍ତ ଏହି ତଥ୍ୟ "ଲିଙ୍କେଜ" ନାମରେ ସମସ୍ତଙ୍କ ଦ୍ୱାରା ଆଦୃତ ହୋଇଥିଲା ।

ହାଲଡେନ ଗ୍ରେଗର ମେଣ୍ଡେଲଙ୍କ ଦ୍ୱାରା ପ୍ରଦତ୍ତ ତଥ୍ୟଗୁଡ଼ିକ ପ୍ରତି ଆକୃଷ୍ଟ ହେବା ସଂଗେ ସଂଗେ ଚାର୍ଲସ୍ ଡ଼ାରଉଇନ୍‌ଙ୍କ ଜୈବବିବର୍ତ୍ତନବାଦତତ୍ତ୍ୱ ସଂପର୍କରେ ବୁଝିବାକୁ ଚେଷ୍ଟା କରିଥିଲେ । ବିବର୍ତ୍ତନବାଦରେ ପ୍ରକାଶିତ ପ୍ରାଣୀମାନଙ୍କର କ୍ରମବିକାଶ ସମ୍ବନ୍ଧୀୟ ତଥ୍ୟ ତାଂକୁ ବେଶ୍ ଆମୋଦିତ କରିଥିଲା । ଆନୁବଂଶିକୀ ବିଜ୍ଞାନ ଓ ଜୈବ ବିବର୍ତ୍ତନାବାଦ ଉପରେ ଗଭୀର ଅଧ୍ୟୟନ କରି ନୂତନ ଆବିଷ୍କାର କରିବା ପାଇଁ ସେ ସଂକଳ୍ପବଦ୍ଧ ହୋଇଥିଲେ ।

ନିଉ କଲେଜରେ କିଛି ଦିନ ଗଣିତ ଶାସ୍ତ୍ର ଅଧ୍ୟୟନ କରିବା ପରେ ହାଲଡ଼େନ ବିଷୟ ପରିବର୍ତ୍ତନ କରିଦେଇଥିଲେ ଏବଂ ସାହିତ୍ୟ ଉପରେ ଅଧ୍ୟୟନ କରିଥିଲେ । ମାତ୍ର ଭଉଣୀ ନାଓମି ଓ ପିତା ଜେ.ଏସ୍.ହାଲଡେନଙ୍କ ସହ ବୈଜ୍ଞାନିକ ଗବେଷଣା ଚାଲୁରଖିଥିଲେ । ୧୯୧୨ ମସିହାରେ ସେ (ମାତ୍ର ୨୦ ବର୍ଷ ବୟସରେ) ଜର୍ଣ୍ଣାଲ୍ ଅଫ୍ ଫିଜିଓଲୋଜି ପତ୍ରିକାରେ ରକ୍ତରେ ଥିବା ହିମୋଗ୍ଲୋବିନ ଉପରେ କାର୍ବନ ମନୋକ୍ସାଇଡ଼ ଗ୍ୟାସର ପ୍ରଭାବ ସଂପର୍କରେ ନିବନ୍ଧଟିଏ ପ୍ରକାଶ କରି ସମସ୍ତଙ୍କର ପ୍ରଶଂସା ଭାଜନ ହୋଇପାରିଥିଲେ । ଭଉଣୀ ନାଓମିଙ୍କର ଗିନିପିଗ୍ ଓ ସ୍ୱୟଙ୍କର ପାଳିତ ମୂଷା ଉପରେ ଗଭୀର ଅଧ୍ୟୟନ କରି ୧୯୧୫ ମସିହାରେ ସେ ଜର୍ଣ୍ଣାଲ ଅଫ ଜେନେଟିକସ୍ ପତ୍ରିକାରେ ମଧ ଏକ ନିବନ୍ଧ ପ୍ରକାଶ କରିଥିଲେ । ମାତ୍ର ୧୯୧୪. ମସିହାରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯିବା ଯୋଗୁଁ ତାଂକର ବୈଜ୍ଞାନିକ କାର୍ଯ୍ୟକଳାପ ବାଧାପ୍ରାପ୍ତ ହୋଇଯାଇଥିଲା ।

ହାଲ୍‌ଡେନଙ୍କର ବାଲ୍ୟଜୀବନ ଓ ଶିକ୍ଷାଲାଭ ସଂପର୍କରେ ଅନୁଧ୍ୟାନ କଲେ ଜଣାଯାଏ ଯେ ତାଂକର ପିତା ଜେ.ଏସ.ହାଲ୍‌ଡେନ ତାଂକୁ ଜଣେ ବୈଜ୍ଞାନିକ ହେବାପାଇଁ ବିଶେଷ ଭାବରେ ଅନୁପ୍ରାଣିତ କରିଥିଲେ । ଫଳସ୍ୱରୁପ ହାଲ୍‌ଡେନଙ୍କ ହୃଦୟରେ ପିତାମାତାଙ୍କ ପ୍ରତି ଗଭୀର ଭକ୍ତିର ଉଦ୍ରେକ ହୋଇଥିଲା । ତାଂକର

ପିତୃଭକ୍ତି ସଂପର୍କରେ ପ୍ରଫେସର ହ୍ବାଇଟ ଲେଖିଛନ୍ତି ଯେ, " ହାଲ୍‌ଡେନ ତାଂକର ପିତା ବିଶିଷ୍ଟ ଶରୀରତତ୍ତ୍ବବିତ୍ ଓ ଦାର୍ଶନିକ, ଜୋହନ ସ୍କର୍ଟ ହାଲଡେନଙ୍କୁ ଗଭୀର ଭକ୍ତି କରୁଥିଲେ ଏବଂ ପିତାଙ୍କର ମୃତ୍ୟୁପରେ ତାଂକର ସ୍ମୃତି ପ୍ରତି ଶ୍ରଦ୍ଧା ପ୍ରକାଶ କରି ନିଜର ବୈଜ୍ଞାନିକ ଗବେଷଣାରେ ମନୋନିବେଶ କରୁଥିଲେ ।"



ହାଲ୍‌ଡେନ୍‌ଙ୍କର ପିତା ପ୍ରଫେସର ଜନ୍ ସ୍କଟ୍ ହାଲ୍‌ଡେନ୍

—୦—

## ୩

# ବିଶ୍ୱଯୁଦ୍ଧର ସୈନିକ

୧୯୧୪ ମସିହାରେ ଇଉରୋପରେ ଏକ ସ୍ଥାନୀୟ ଘଟଣାକୁ କେନ୍ଦ୍ରକରି ପ୍ରଥମ ବିଶ୍ୱଯୁଦ୍ଧର ସୂତ୍ରପାତ ହୋଇଥିଲା । ପ୍ରଥମ ବିଶ୍ୱଯୁଦ୍ଧରେ ଏକ ପକ୍ଷରେ ସର୍ବିଆ, ଋଷ, ଫ୍ରାନସ୍, ବ୍ରିଟେନ, ଇଟାଲୀ, ଗ୍ରୀସ୍, ରୋମାନିଆ, ଜାପାନ, ଚୀନ, ଯୁକ୍ତରାଷ୍ଟ୍ର ଇତ୍ୟାଦି ରାଷ୍ଟ୍ର ରହିଥିଲେ ଏବଂ ସେମାନେ ମିତ୍ରଶକ୍ତି ନାମରେ ପରିଚିତ ଥିଲେ । ଅପର ପକ୍ଷରେ ଅଷ୍ଟ୍ରିଆ, ହଙ୍ଗେରୀ, ଜର୍ମାନୀ, ବୁଲଗେରିଆ, ତୁର୍କୀ ଇତ୍ୟାଦି ରାଷ୍ଟ୍ର ରହିଥିଲେ ଏବଂ ସେମାନଂକୁ କେନ୍ଦ୍ରଶକ୍ତି ବୋଲି କୁହାଯାଉଥିଲା । ଏହି ଯୁଦ୍ଧରେ ମିତ୍ରଶକ୍ତି ଓ କେନ୍ଦ୍ରଶକ୍ତି ପରସ୍ପର ମଧ୍ୟରେ ଲଢ଼ିଥିଲେ ମଧ୍ୟ ଏହାର ପରିଣାମ ସମଗ୍ର ବିଶ୍ୱକୁ ପ୍ରଭାବିତ କରିଥିଲା ।

ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଖାଦ୍ୟାଭାବ, ବୋମାମାଡ଼, ଦୁର୍ଭିକ୍ଷ ଓ ମହାମାରୀ ଯୋଗୁଁ ବେସାମରିକ ଜନସାଧାରଣ ବହୁମାତ୍ରାରେ କ୍ଷତିଗ୍ରସ୍ତ ହୋଇଥିଲେ ଏବଂ ସେମାନଂକର ଦୁଃଖକଷ୍ଟ ଯୁଦ୍ଧରତ ସୈନିକମାନଂକର ଦୁଃଖଦୁର୍ଦ୍ଦଶାଠାରୁ ବହୁଗୁଣରେ ଅଧିକା ଥିଲା । ଏହି ବିଶ୍ୱଯୁଦ୍ଧରେ (୧୯୧୪-୧୮) ପ୍ରାୟ ଛଅକୋଟି ସୈନ୍ୟ ଅଂଶ ଗ୍ରହଣ କରିଥିଲେ । ସେମାନଂକ ମଧ୍ୟରୁ ପ୍ରାୟ ଏକ କୋଟି ଯୁଦ୍ଧକ୍ଷେତ୍ରରେ ପ୍ରାଣ ହରାଇଥିଲେ ଓ ପ୍ରାୟ ସତୁରୀ ଲକ୍ଷ ସୈନ୍ୟ ଆହତ ହୋଇ ପଂଗୁ ହୋଇଯାଇଥିଲେ । ପ୍ରବଳ ବୋମାବର୍ଷଣ ଓ ଯୁଦ୍ଧର ବ୍ୟାପକତା ଯୋଗୁଁ ବହୁ ଜନବସତି, ଡାକ୍ତରଖାନା, କଳକାରଖାନା, ଉପାସନା ଗୃହ ଧ୍ୱଂସ ପାଇଯାଇଥିଲା । ବିଶ୍ୱଯୁଦ୍ଧର ଏହି ବ୍ୟାପକ ଧ୍ୱଂସଲୀଳା ବିଶ୍ୱବାସୀଙ୍କୁ ଖୁବ୍ ଆତଂକିତ କରିଦେଇଥିଲା ।

ପ୍ରଥମ ବିଶ୍ୱଯୁଦ୍ଧ ବ୍ୟାପକ ଆକାର ଧାରଣ କରିବାପରେ ବ୍ରିଟେନର ନବଯୁବକମାନଂକୁ ସୈନିକ ଭାବରେ ଯୋଗଦେବାପାଇଁ ଆହ୍ୱାନ କରାଯାଇଥିଲା । ହାଲ୍‌ଡେନ ନିଜର ବୈଜ୍ଞାନିକ ଗବେଷଣା ଓ ବିଶ୍ୱବିଦ୍ୟାଳୟ ଅଧ୍ୟୟନ ଛାଡ଼ି ବ୍ରିଟେନର "ବ୍ଲାକ ୱାଚ ରେଜିମେଣ୍ଟରେ" ଜଣେ ଅଫିସର ଭାବରେ ଯୋଗ ଦେଇଥିଲେ । ଯୁଦ୍ଧ ସମୟରେ ସେ ଜଣେ ସାହସୀ ସୈନିକ ଭାବରେ ନିଜ ଦେଶପାଇଁ ପ୍ରାଣ ମୂର୍ଚ୍ଛା ଲଢ଼ିଥିଲେ । ପଶ୍ଚିମ ସୀମାନ୍ତରେ ଯୁଦ୍ଧକରୁଥିବା ସମୟରେ ସେ ଅନେକ ଶତ୍ରୁ ସୈନିକଙ୍କୁ ନିପାତ କରିବା ସଂଗେସଂଗେ କେତେକ ଗୁରୁତ୍ୱପୂର୍ଣ୍ଣ ଘାଟିକୁ ମଧ୍ୟ ଦଖଲ କରିପାରିଥିଲେ । ମାତ୍ର ଦୁର୍ଭାଗ୍ୟବଶତଃ ଶତ୍ରୁ ସୈନ୍ୟ ଗୁଳିରେ ଆଘାତ ପ୍ରାପ୍ତ ହୋଇଥିଲେ । ଏହାବ୍ୟତୀତ ମେସୋପୋଟାମିଆ ଅଞ୍ଚଳରେ ଯୁଦ୍ଧ କରୁଥିବା ବେଳେ ପୁନର୍ବାର ଆଘାତ

ପ୍ରାପ୍ତ ହୋଇ ରକ୍ତାକ୍ତ ହୋଇଯାଇଥିଲେ । ୧୯୧୮ ମସିହା ନଭେମ୍ବର ୧୧ ତାରିଖ ଦିନ ଜର୍ମାନୀ ଆତ୍ମସମର୍ପଣ କଲାପରେ ପ୍ରଥମ ବିଶ୍ୱଯୁଦ୍ଧର ଅବସାନ ଘଟିଲା । ଏହାପରେ ହାଲଡେନଙ୍କୁ ଚିକିତ୍ସାପାଇଁ ଭାରତର ସିମଳାସ୍ଥିତ ସେନା ଛାଉଣୀକୁ ପଠାଇ ଦିଆଯାଇଥିଲା । ଦୀର୍ଘଦିନ ପର୍ଯ୍ୟନ୍ତ ଚିକିତ୍ସା ହେଲାପରେ ହାଲଡେନଙ୍କର ଯୁଦ୍ଧଜନିତ କ୍ଷତ ପୂରଣ ହୋଇଯାଇଥିଲା ।

ହାଲଡେନ ନିଜେ ସ୍ୱୀକାର କରିଥିଲେ ଯେ ସ୍ୱର୍ଗଭୂମି ଭାରତ ତାଂକୁ ପ୍ରଥମ ଆଗମନରେ ହିଁ ଆକର୍ଷିତ କରିଥିଲା ଏବଂ ତାଂକ ମନଭିତରେ ଭାରତୀୟମାନଂକ ପ୍ରତି ଏକ ଭ୍ରାତୃତ୍ୱର ଭାବ ଜାଗ୍ରତ କରିଥିଲା । ତାଂକର ମନେ ହୋଇଥିଲା ପୁଣି ଥରେ ଫେରି ଆସି ଭାରତରେ ତାଂକୁ ବସବାସ କରିବାକୁ ପଡ଼ିବ ।

ହାଲଡେନ ସଂପୂର୍ଣ୍ଣ ଭାବରେ ଆରୋଗ୍ୟ ଲାଭ କରିବାପରେ ସିମଳାରେ କିଛିଦିନ ବିଶ୍ରାମ ନେଇଥିଲେ । ଏହା ପରେ ପରେ ମଧ୍ୟଭାରତରେ ମୋହ ନାମକ ସେନାଛାଉଣୀରେ ଯୋଗ ଦେଇଥିଲେ । ମୋହ ଠାରେ ସେ ଏକ ବର୍ଷ ପର୍ଯ୍ୟନ୍ତ ବମ୍ବିଙ୍ଗ ଇନଷ୍ଟ୍ରକ୍ଟର ଭାବରେ କାର୍ଯ୍ୟ କରିଥିଲେ । ତାଂକୁ ସେତେ ବେଳକୁ ମାତ୍ର ୨୬ ବର୍ଷ ହୋଇଥିଲା । ବ୍ରିଟଶ ଅଫିସରମାନେ ସାଧାରଣତଃ ଭାରତୀୟ ଲୋକମାନଂକୁ ଘୃଣା କରୁଥିଲେ ଏବଂ ସେମାନଂକ ସହ ମିଶିବାପାଇଁ ଆଦୌ ପସନ୍ଦ କରୁନଥିଲେ । ଶାସିତ ଓ ଶାସକର ଚିନ୍ତାଧାରା ବ୍ରିଟିଶ ଅଫିସର ମାନଂକୁ ବିଶେଷ କରି ରକ୍ଷ କରିଦେଇଥିଲା । ମାତ୍ର ହାଲଡେନ ଏହାର ଏକ ବ୍ୟତିକ୍ରମ ଥିଲେ । ସେ ଭାରତୀୟ ସୈନିକ ଓ ସାଧାରଣ ଲୋକଙ୍କ ସହ ମିଳାମିଶା କରିବା ସଂଗେସଂଗେ ସେମାନଂକୁ ଯଥୋଚିତ ବ୍ୟବହର ପ୍ରଦର୍ଶନ କରୁଥିଲେ ।

ଭାରତୀୟ ସାମାଜିକ ପରମ୍ପରା ଓ ହିନ୍ଦୁ ସଂସ୍କୃତି ତାଂକୁ ବେଶ୍ ଚମତ୍କୃତ କରିଥିଲା । ବିଶେଷକରି ହିନ୍ଦୁ ପୁରାଣମାନଂକରେ ଦଶଅବତାରର ବର୍ଣ୍ଣନା ଓ ଗୋମାତାର ପୂଜା ତାଂକୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ୧୯୨୩ ମସିହାରେ ପ୍ରକାଶିତ ପୁସ୍ତକ "ଡେଇଡାଲସ୍"ରେ ସେ ଗୋମାତା ପୂଜା ସଂପର୍କରେ ଆଲୋଚନା କରିବା ସଂଗେସଂଗେ ୧୯୩୨ ମସିହାରେ ପ୍ରକାଶିତ ପୁସ୍ତକ "ବିବର୍ତ୍ତନ ବାଦର କାରଣ" ପୁସ୍ତକରେ ଦଶାବତାର ଓ ବଣ୍ୟପଶୁମାନଂକ ସହ ଭାରତୀୟ ସଂସ୍କୃତିର ଯେଉଁ ଧାର୍ମିକ ସମନ୍ୱୟ ରହିଛି ସେ ସଂପର୍କରେ ମଧ୍ୟ ଆଲୋଚନା କରିଥିଲେ ।

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ଅନୁମେୟ ଯେ ହାଲଡେନ କ୍ଷତାକ୍ତ ସୈନିକ ରୂପେ ଭାରତକୁ ଆସିଥିଲେ ମଧ୍ୟ ତାଂକ ଭିତରେ ଲୁକ୍କାୟିତ

ଥିବା ବୈଜ୍ଞାନିକ ମନୋଭାବ ତାଂକୁ ବୈଜ୍ଞାନିକ ଜିଜ୍ଞାସା ଭିତରେ ବୁଡ଼ାଇ ରଖିଥିଲା । ସେ ନିଜର ସମୟକୁ ସଦୁପଯୋଗ କରି ବିଭିନ୍ନ ପର୍ଯ୍ୟବେକ୍ଷଣ କରିବା ସଂଗେସଂଗେ କେତେକ ନୂତନ ସିଦ୍ଧାନ୍ତରେ ପହଞ୍ଚିବାକୁ ସକ୍ଷମ ହୋଇପାରିଥିଲେ ।

ଭାରତରୁ ପ୍ରତ୍ୟାବର୍ତ୍ତନପରେ ହାଲଡେନ ୧୯୧୯ ମସିହାରେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ନିଉ କଲେଜରେ ଜଣେ ରିସର୍ଚ୍ଚ ଫେଲୋ ହିସାବରେ ଯୋଗ ଦେଇଥିଲେ । ମାତ୍ର ପ୍ରଥମ ବିଶ୍ୱଯୁଦ୍ଧରେ ଘଟିଯାଇଥିବା ଭୟାବହ ଘଟଣାଗୁଡ଼ିକ ତାଂକ ଦୃଷ୍ଟିପଥରେ ବାରମ୍ବାର ପ୍ରତିଫଳିତ ହେଉଥିଲା । ଯୁଦ୍ଧ ଜନିତ କ୍ଷୟକ୍ଷତି ଓ ନିରସ୍ତ୍ର ନିରୀହ ଜନସାଧାରଣଂକର ଦୁଃଖ ଦୁର୍ଦ୍ଦଶା ଦେଖି ସେ ଅତ୍ୟନ୍ତ ଦୁଃଖ ଅନୁଭବ କରିଥିଲେ । ସାମ୍ରାଜ୍ୟବାଦୀ, ଯୁଦ୍ଧଖୋର ରାଜନୀତିଜ୍ଞମାନଂକର କୂଟଚକ୍ରାନ୍ତ ଫଳରେ ଭୟଂକର ଯୁଦ୍ଧର ସୂତ୍ରପାତ ହୋଇ ବିଶ୍ୱର ଦେଶଗୁଡ଼ିକ କିଭଳି ଶ୍ମଶାନରେ ପରିଣତ ହୋଇଯାଇଛି ସେ କଥା ସ୍ୱଚକ୍ଷୁରେ ଦେଖିବା ପରେ ସେହି ସାମ୍ରାଜ୍ୟବାଦୀ ରାଜନୀତିଜ୍ଞ ମାନଂକ ପ୍ରତି ତାଂକ ମନରେ ଘୃଣାଭାବ ଜାତ ହୋଇଥିଲା । ଏହି ରାଜନୀତିଜ୍ଞମାନଂକ ଦ୍ୱାରା ପରିଚାଳିତ ହୋଇ ବୈଜ୍ଞାନିକମାନେ ଅତ୍ୟାଧୁନିକ ମାରଣାସ୍ତ୍ର ଓ ବୋମା ତିଆରି କରୁଥିବାରୁ ସେ ଖୁବ୍ ବ୍ୟଥିତ ହୋଇଥିଲେ ଏବଂ ନିଜର ମନବେଦନା ତାଂକର ପୁସ୍ତକ "ଡେଇଡାଲସ" ରେ ପ୍ରକାଶ କରିବା ସଂଗେସଂଗେ ଭବିଷ୍ୟତରେ ହେବାକୁଥିବା ଯୁଦ୍ଧର ରୂପରେଖ କି ପ୍ରକାରର ହେବ ତା ସଂପର୍କରେ ଆଲୋଚନା କରିଥିଲେ । ୧୯୩୯ ମସିହାରେ ପ୍ରଫେସର ହ୍ୱାଇଟଙ୍କ ସହ କଥାବାର୍ତ୍ତା କଲାବେଳେ ସେ କହିଥିଲେ ଯେ ପରମାଣୁ ଯୁଦ୍ଧରେ ପରିଣାମ ଖୁବ୍ ଭୟଙ୍କର ହେବ କାରଣ ଓ୍ୱାଲନଟ ଆକାରର ଖଣ୍ଡିଏ ଇଉରାନିୟମ ଦ୍ୱାରା ନିର୍ମିତ ବୋମାର ପିକାଡେଲି ଠାରୁ ହାମ୍ପଷ୍ଟେଡ ପର୍ଯ୍ୟନ୍ତ ବିସ୍ତୃତ ଅଂଚଳକୁ ଧ୍ୱଂସ କରିଦେଇପାରିବ । ବାସ୍ତବରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ପରମାଣୁ ବୋମା ହିରୋସୀମା ଓ ନାଗାସାକୀ ସହରକୁ ଧ୍ୱଂସ କରି ଶ୍ମଶାନରେ ପରିଣତ କରିଦେଇଥିଲା । ଏଣୁ ପ୍ରଫେସର ହାଲଡେନ ବୈଜ୍ଞାନିକମାନଂକୁ ଏଥିରୁ ନିବୃତ୍ତ ରହି ବୈଜ୍ଞାନିକ କୌଶଳର ଶାନ୍ତିପୂର୍ଣ୍ଣ ବିନିଯୋଗ କରି ବିଭିନ୍ନ ସାମାଜିକ ଓ ଅର୍ଥନୈତିକ ସମସ୍ୟାରେ ସମାଧାନ କରିବାପାଇଁ ଆହ୍ୱାନ ଦେଇଥିଲେ ।

# ୪
# କର୍ମମୟ ଜୀବନ

ହାଲଡେନ୍ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ନିଉ କଲେଜରୁ ନିଜର ଏମ.ଏ. ଡ଼ିଗ୍ରୀ ଗ୍ରହଣ କରିଥିଲେ । ୧୯୧୯ ମସିହାଠାରୁ ୧୯୨୨ ମସିହା ପର୍ଯ୍ୟନ୍ତ ନିଉ କଲେଜରେ ସେ ଜଣେ ରିସର୍ଚ୍ଚ ଫେଲୋ ଭାବରେ କାର୍ଯ୍ୟ କରିଥିଲେ । ୧୯୨୨ ମସିହାରେ ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଜୈବରସାୟନ ବିଜ୍ଞାନରେ ଜଣେ ରିଡର ଭାବରେ ଯୋଗଦେଇ ୧୯୩୨ ମସିହା ପର୍ଯ୍ୟନ୍ତ ୧୦ ବର୍ଷ କାଳ କାର୍ଯ୍ୟ କରିଥିଲେ । ଏହି ସମୟରେ ସେ ନୋବେଲ ପୁରସ୍କାର ପ୍ରାପ୍ତ ଜୈବ ରାସାୟନବିତ୍ ସାର୍ ଫ୍ରେଡେରିକ ଗୋଲ୍ୟାଣ୍ଡ ହପକିନ୍‌ସ୍‌ଙ୍କ ଅଧୀନରେ କାର୍ଯ୍ୟ କରି ପ୍ରସଂଶାର ପାତ୍ର ହୋଇପାରିଥିଲେ । ସାର ହପକିନସଙ୍କ ସହାୟତାରେ ସେ ଜୈବ ରସାୟନ ଓ ଆନୁବଂଶିକୀ ବିଜ୍ଞାନର ତଥ୍ୟଗୁଡ଼ିକୁ ମିଶ୍ରଣ କରି ଜୈବ ରସାୟନ ଓ ଆନୁବଂଶିକୀ (ବାଇଓ କେମିକାଲ ଜେନେଟିକସ୍) ନାମରେ ଏକ ନୂତନ ବିଭାଗର ସୃଷ୍ଟି କରିବା ପାଇଁ ଚେଷ୍ଟାକରି ସଫଳ ହୋଇପାରିଥିଲେ ।

କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କରୁଥିବା ସମୟରେ ୧୯୨୩ ମସିହାରେ ତାଂକଦ୍ୱାରା ଲିଖିତ ପ୍ରଥମ ପୁସ୍ତକ ଡେଇଡାଲସ୍ ପ୍ରକାଶିତ ହୋଇଥିଲା । "ଡେଇଡାଲସ୍" ପୁସ୍ତକଟି ବିଜ୍ଞାନ ଉପରେ ଆଧାରିତ ଥିଲା ଏବଂ ଏଥିରେ ଅନେକ ମନୋରଂଜନକାରୀ ବୈଜ୍ଞାନିକ ତଥ୍ୟ ସନ୍ନିବେଶିତ ହୋଇଥିଲା । ଏତଦ୍‌ବ୍ୟତୀତ ହାଲଡେନ ଏହି ପୁସ୍ତକରେ ବୈଜ୍ଞାନିକ ଚିନ୍ତାଧାରା ଉପରେ ପର୍ଯ୍ୟବସିତ କେତେକେ ଭବିଷ୍ୟତ ବାଣୀ ମଧ୍ୟ ଅନ୍ତର୍ଭୁକ୍ତ କରିଥିଲେ । ହାଲେଡେନଙ୍କର "ଡାଇଡାଲସ୍" ପୁସ୍ତକଟି ବୈଜ୍ଞାନିକ ମହଲରେ ବେଶ୍ ଆଦୃତ ହେବା ସଂଗେସଂଗେ ଆଲଡୋସ ହକସଲେଙ୍କୁ "ବ୍ରେଭ ନିଉ ୱାରଲଡ଼" ପୁସ୍ତକ ରଚନା କରିବାରେ ମଧ୍ୟ ପ୍ରଭାବିତ କରିଥିଲା ।

ହାଲଡେନଙ୍କର ଦ୍ୱିତୀୟ ପୁସ୍ତକ "ଏନଜାଇମସ୍" ୧୯୩୦ ମସିହାରେ ପ୍ରକାଶିତ ହେବାପରେ ରସାୟନ ବିଜ୍ଞାନରେ ଏକ ନୂତନ ଦିଗନ୍ତ ସୃଷ୍ଟି କରିଥିଲା । ସମସାମୟିକ ବୈଜ୍ଞାନିକମାନେ ଆକୃଷ୍ଟ ହୋଇ ତାଂକ ସହ ରସାୟନ ବିଜ୍ଞାନ ଗବେଷଣାର ବିଭିନ୍ନ ଦିଗ ସମ୍ପର୍କରେ ଆଲୋଚନା କରିବାପାଇଁ ଆଗ୍ରହ ପ୍ରକାଶ କରିଥିଲେ ଏବଂ ହାଲଡେନ ସେମାନଂକୁ ନୂତନ ତଥ୍ୟ ଆବିଷ୍କାର କରିବାପାଇଁ ଉପଯୁକ୍ତ ପ୍ରେରଣା ଯୋଗାଇ ଦେଇଥିଲେ । ସେ ୧୯୩୨ ମସିହା ପର୍ଯ୍ୟନ୍ତ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କରିଥିଲେ ।

୧୯୩୦ ରୁ ୧୯୩୨ ମସିହା ପର୍ଯ୍ୟନ୍ତ ସେ "ଫୁଲେରିଆନ ପ୍ରଫେସର ଅଫ ଫିଜିଓଲୋଜି" ଭାବରେ ମଧ୍ୟ କାର୍ଯ୍ୟ କରିଥିଲେ ।

୧୯୩୨ ମସିହାରେ ହାଲ୍‌ଡେନଙ୍କ ଦ୍ୱାରା ଲିଖିତ ପୁସ୍ତକ "ଦି କଜେସ୍ ଅଫ୍ ଇଭାଲ୍ୟୁସନ୍" ପ୍ରକାଶିତ ହୋଇଥିଲା । ଏହି ପୁସ୍ତକ ତାଂକ ବୈଜ୍ଞାନିକ ପ୍ରତିଭାକୁ ସମୁଜ୍ଜଳ କରିଥିଲା । ୧୯୩୨ ମସିହାରେ ତାଂକୁ ବ୍ରିଟେନର ରୟାଲ୍ ସୋସାଇଟିର ଫେଲୋ ଭାବରେ ନିର୍ବାଚିତ କରାଯାଇଥିଲା । ମାତ୍ର ୪୦ ବର୍ଷ ବୟସରେ ଏହି ଉଚ୍ଚ ସମ୍ମାନର ଅଧିକାରୀ ହୋଇ ସେ ନିଜକୁ ଗୌରବାନ୍ୱିତ ମନେ କରିଥିଲେ । ତାଂକର ବୈଜ୍ଞାନିକ ପ୍ରତିଭାରେ ଆକୃଷ୍ଟ ହୋଇ ୧୯୩୨ ମସିହାରେ ଆମେରିକାର କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟ ତାଂକୁ ଭିଜିଟିଂଗ ପ୍ରଫେସର ଭାବରେ କାର୍ଯ୍ୟ କରିବାପାଇଁ ଆମନ୍ତ୍ରିତ କରିଥିଲେ ଏବଂ ହାଲଡେନ ଏହି ଆମନ୍ତ୍ରଣକୁ ସ୍ୱୀକାର କରିଥିଲେ ।

୧୯୩୩ ମସିହାରେ ହାଲଡେନ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଆନୁବଂଶିକୀ ବିଭାଗରେ ପ୍ରଫେସର ହିସାବରେ ଯୋଗ ଦେଇଥିଲେ । ୧୯୩୭ ମସିହାରେ ହାଲଡେନଙ୍କୁ ସମ୍ମାନ ସୂଚକ "ୱେଲଡନ୍ ପ୍ରଫେସର ଅଫ୍ ବାଇଓମେଟ୍ରି" ଆସନ ଗ୍ରହଣ କରିବା ପାଇଁ ଅନୁରୋଧ କରାଯାଇଥିଲା । ହାଲଡେନ୍ ଆନନ୍ଦର ସହିତ ଏହି ପ୍ରଫେସର ଆସନ ଗ୍ରହଣ କରିଥିଲେ ଏବଂ ଦୀର୍ଘ ୨୦ ବର୍ଷ ପର୍ଯ୍ୟନ୍ତ ଏହି ପଦବୀରେ ନିଷ୍ଠାର ସହ କାର୍ଯ୍ୟ କରିଥିଲେ ।

ହାଲଡେନ "ୱେଲଡ଼ନ ପ୍ରଫେସର ଅଫ ବାଇଓମେଟ୍ରି" ଭାବରେ ନିଯୁକ୍ତି ପାଇଲାପରେ ନିଜକୁ ଭାଗ୍ୟବାନ ମନେକରିଥିଲେ ଏବଂ ଏ ସଂପର୍କରେ ତାଂକର ପୁସ୍ତକ ବିଜ୍ଞାନ ଏବଂ ଦୈନନ୍ଦିନ ଜୀବନ (ସାଇନସ୍ ଆଣ୍ଡ ଏଭ୍ରିଡେ ଲାଇଫ) ରେ ଏକ ସୁନ୍ଦର ପ୍ରବନ୍ଧଟିଏ ଲେଖିଥିଲେ । ହାଲଡେନ ଲେଖିଥିଲେ ଯେ– "ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ବୈଜ୍ଞାନିକ ୱେଲଡ଼ନ୍ କ୍ଲୋରିନ ପ୍ରସ୍ତୁତିର ପ୍ରକ୍ରିୟା ଉଦ୍ଭାବନ କରିଥିଲେ ଏବଂ ଏହି ଉଦ୍ଭାବନ ଲାଗି ସେ ପ୍ରଚୁର ଅର୍ଥ ଉପାର୍ଜନ କରିଥିଲେ । ଏହି ସଂପତ୍ତି ତାଂକର ପୁତ୍ର ବଂଶଗତ ସୂତ୍ରରେ ଲାଭ କରିଥିଲେ । ସୌଭାଗ୍ୟକୁ ତାଂକର ପୁତ୍ର ଅକସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ପ୍ରାଣୀ ବିଜ୍ଞାନରେ ପ୍ରଫେସର ଭାବରେ ନିଯୁକ୍ତି ପାଇଥିଲେ । ଏହି ବିପୁଳ ସଂପତ୍ତିକୁ ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟକୁ ପ୍ରଦାନ କରି ନିଜ ପିତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏକ ପ୍ରଫେସର ଆସନ ସୃଷ୍ଟି କରିବା ପାଇଁ ନିବେଦନ କରିଥିଲେ । ଏହି ସମ୍ମାନଜନକ ଆସନକୁ ମୁଁ ପ୍ରଥମ ନିଯୁକ୍ତି ପାଇଥିବାରୁ ଅତ୍ୟନ୍ତ ଆନନ୍ଦ ଲାଭ କରିଥିଲି କାରଣ ମୁଁ ଯେଉଁ ଦିଗରେ ଗବେଷଣା କରିବାପାଇଁ ଚାହୁଁଥିଲି ଏହି ଆସନର ଉଦ୍ଦେଶ୍ୟ ଏକା ଥିଲା ।

ବାଇଓମେଟ୍ରିର ସରଳ ଅର୍ଥ ହେଲା ଜୀବବିଜ୍ଞାନ ସମ୍ବନ୍ଧୀୟ ଗବେଷଣାରେ ଉଚ୍ଚସ୍ତରର ଗଣିତଶାସ୍ତ୍ରର ପ୍ରୟୋଗ । ଏହି ବାଇଓମେଟ୍ରି ପ୍ରଫେସର ପଦବୀରେ ରହିବା ପରେ ମୋତେ ବର୍ଷକୁ ଚାଳିଶରୁ ପଚାଶଟି କ୍ଲାସ ନେଇ ଛାତ୍ରମାନଂକୁ ପଢ଼ାଇବାକୁ ପଡୁଥିଲା ଏବଂ ଅବଶିଷ୍ଟ ସମୟ ଗବେଷଣା କରିବାରେ କଟିଯାଉଥିଲା । ମୋର ଗବେଷଣାର ମୁଖ୍ୟ ଆଭିମୁଖ୍ୟ ଥିଲା, ଆନୁବଂଶିକୀ ଓ ଜୈବବିବର୍ତ୍ତନାବାଦ ସଂପର୍କରେ ଗଣିତ ଶାସ୍ତ୍ରର ପ୍ରୟୋଗ । ମୋତେ ଏ ପ୍ରକାର ଗବେଷଣା ଖୁବ୍ ଭଲ ଲାଗୁଥିଲା ଏବଂ ପ୍ରତିବର୍ଷ ମୁଁ ଦଶଟି ବୈଜ୍ଞାନିକ ନିବନ୍ଧ ବିଭିନ୍ନ ବୈଜ୍ଞାନିକ ପତ୍ରପତ୍ରିକାରେ ପ୍ରକାଶ କରୁଥିଲି ।

ହାଲଡ଼େନ୍ "ପ୍ରଫେସର ଅଫ ବାଇଓମେଟ୍ରି" ପଦବୀରେ ଅଧିଷ୍ଠିତ ହେଲାବେଳକୁ ଆନୁବଂଶିକୀ, ଜୈବରସାୟନ ଓ ଶରୀରତତ୍ତ୍ୱ ବିଜ୍ଞାନରେ ଜଣେ ସ୍ୱନାମଧନ୍ୟ ବୈଜ୍ଞାନିକ ଭାବ ସୁପରିଚିତ ହୋଇସାରିଥିଲେ । ୧୯୪୨ ମସିହାରେ ସେ "ନିଉ ପାଥସ୍ ଇନ୍ ଜେନେଟିକସ" ପୁସ୍ତକଟି ପ୍ରଣୟନ କରିଥିଲେ । ଏତଦ୍ ବ୍ୟତୀତ "ହ୍ୟୁମାନ ଜେନେଟିକସ୍" (ମାନବୀୟ ଆନୁବଂଶିକୀ) ନାମରେ ସେ ଏକ ସ୍ୱତନ୍ତ୍ର ବିଜ୍ଞାନ ବିଭାଗ ଆରମ୍ଭ କରିଥିଲେ । ମଣିଷ ମାନଂକ ମଧ୍ୟରେ ହେଉଥିବା ମ୍ୟୁଟେସନର ହାର ନିର୍ଣ୍ଣୟ କରିବା ପାଇଁ ସେ ସ୍ୱତନ୍ତ୍ର ପଦ୍ଧତି ନିର୍ଣ୍ଣୟ କରିବା ସଂଗେସଂଗେ ମଣିଷର ଗୁଣସୂତ୍ରରେ ବିଭିନ୍ନ ଜିନ୍ ମାନଂକର ଲିଙ୍କେଜ ସଂପର୍କରେ ଧାରଣା ପ୍ରଦାନ କରିଥିଲେ ।

ହାଲଡ଼େନ ଜଣେ ଉଚ୍ଚକୋଟୀର ବୈଜ୍ଞାନିକ ଭାବରେ ନିଜର ଗବେଷଣାକୁ ଚାଲୁରଖିଥିଲେ । ତା ସଂଗେସଂଗେ ପ୍ରତିଭାବାନ ଯୁବକମାନଂକୁ ବୈଜ୍ଞାନିକ ଗବେଷଣା କରିବାପାଇଁ ଉପଯୁକ୍ତ ପ୍ରେରଣା ପ୍ରଦାନ କରୁଥିଲେ । ତାଂକ ସହାୟତାରେ ବୋରିସ୍ ଚେନ ନିଜର ବୈଜ୍ଞାନିକ ଗବେଷଣା ଆରମ୍ଭ କରିଥିଲେ । ପରବର୍ତ୍ତୀକାଳରେ ସେ ଆଲେକଜାଣ୍ଡର ଫ୍ଲେମିଙ୍ଗିଙ୍କ ସହ ନୋବେଲ ପୁରସ୍କାର ପାଇବାକୁ ସକ୍ଷମ ହୋଇପାରିଥିଲେ । ହାଲଡେନ ଅଧିକ ନମ୍ବର ରଖି ପରୀକ୍ଷାରେ ଉତ୍ତିର୍ଣ୍ଣ ହୋଇଥିବା ଯୁବକ ଯୁବତୀମାନଂକୁ ଯେ କେବେଳ ବିଜ୍ଞାନ ଗବେଷଣା କରିବାପାଇଁ ପ୍ରବର୍ତ୍ତାଇଥିଲେ ତାହାନୁହେଁ ଅଳ୍ପ ନମ୍ବର ରଖି ବିଜ୍ଞାନ ଗବେଷଣା ପ୍ରତି ନିଷ୍ଠାଥିବା ଯୁବକଯୁବତୀ ମାନଂକୁ ସେ ମଧ୍ୟ ପ୍ରେରଣା ଯୋଗାଉଥିଲେ । ଏମାନଂକ ମଧ୍ୟରେ ନୋବେଲ ପୁରସ୍କାର ବିଜେତା ଏ.ଜେ.ପି. ମାର୍ଟିନ ଅନ୍ୟତମ । ମାର୍ଟିନ ତୃତୀୟ ଶ୍ରେଣୀ ଅନର୍ସ ରଖି ବିଶ୍ୱବିଦ୍ୟାଳୟରୁ ପାଶ କରିଥିଲେ । ସେ ପ୍ରଫେସର ହାଲଡେନଙ୍କର ଛାତ୍ର ଥିଲେ । ପ୍ରଫେସର ହାଲଡେନ ମାର୍ଟିନଙ୍କୁ ଉଚ୍ଚତର ଗବେଷଣା କରିବାପାଇଁ ପ୍ରେରଣା ଦେଇଥିଲେ ଏବଂ ନିଜର ଗବେଷଣାଗାରରେ ଜଣେ ସହଯୋଗୀ ଭାବରେ ନିଯୁକ୍ତି ଦେଇଥିଲେ । ପରବର୍ତ୍ତୀ

କାଳରେ ମାର୍ଟିନ ନିଜର **କର୍ତ୍ତବ୍ୟନିଷ୍ଠା** ଓ ଅଧ୍ୟବସାୟ ବଳରେ ପେପର କ୍ରୋମାଟୋଗ୍ରାଫି ଉଦ୍ଭାବନ କରି ନୋବେଲ ପୁରସ୍କାର ପାଇବାପାଇଁ ଯୋଗ୍ୟ ବିବେଚିତ ହୋଇ ପାରିଥିଲେ ।

ପ୍ରଫେସର ହାଲଡ଼େନଙ୍କର ପ୍ରେରଣା ବୈଜ୍ଞାନିକ ଗବେଷଣା କରିବାକୁ ସହଯୋଗୀମାନଂକୁ ପ୍ରେରଣା ଦେବା ସଂଗେସଂଗେ ସେମାନଂକ ସହ ନିଜେ କାର୍ଯ୍ୟକରୁଥିଲେ । ଏହି କାରଣରୁ ତାଂକର ଛାତ୍ର ଓ ସହଯୋଗୀମାନେ ହତୋତ୍ସାହ ନହୋଇ ଆଗ୍ରହର ସହ ଗବେଷଣା କରୁଥିଲେ ଏବଂ ସେମାନେ ବିଜ୍ଞାନ ଜଗତକୁ ଅନେକ ନୂତନ ତଥ୍ୟ ଦେବାକୁ ସମର୍ଥ ହୋଇଥିଲେ ।

ପ୍ରଫେସର ହାଲଡେନ ୧୯୫୭ ମସିହାରେ ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରଫେସର ପଦବୀରୁ ଇସ୍ତଫା ପ୍ରଦାନ କରି କଲିକତା ଠାରେ ଅବସ୍ଥିତ ଭାରତୀୟ ପରିସଂଖ୍ୟାନ ସଂସ୍ଥାରେ ଜଣେ ପ୍ରଫେସର ଭାବଁରେ ଯୋଗଦେଇଥିଲେ । ପ୍ରଫେସର ମହଲନୋବିସ ଏହି ସଂସ୍ଥାର ନିର୍ଦ୍ଦେଶକ ଥିଲେ । ସେ ପ୍ରଫେସର ହାଲଡେନଙ୍କୁ ଗବେଷଣା କାର୍ଯ୍ୟକରିବାପାଇଁ ସେଠାକୁ ଆମନ୍ତ୍ରିତ କରିଥିଲେ ଏବଂ ବିଭିନ୍ନ ସୁବିଧା ସୁଯୋଗ ଦେଇଥିଲେ । ମାତ୍ର ଭାରତୀୟ ଅମଲାତନ୍ତ୍ରର ନାଲିଫିତା ତାଂକର ଗବେଷଣା କାର୍ଯ୍ୟରେ ଅନେକ ବାଧା ସୃଷ୍ଟିକରିଥିଲା ।

ଅଳ୍ପଦିନ ପାଇଁ ସେ ଭାରତ ସରକାରଂକର କାଉନସିଲ ଅଫ ସାଇଣ୍ଟିଫିକ୍ ଆଣ୍ଡ ଇଣ୍ଡଷ୍ଟ୍ରିଆଲ ରିସର୍ଚ୍ଚ ଅନୁଷ୍ଠାନରେ ଗବେଷଣା କରିଥିଲେ । ମାତ୍ର ଏହା ତାଂକୁ ସନ୍ତୋଷ ଦେଇପାରିନଥିଲା । ୧୯୬୧ ମସିହାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କର ନିମନ୍ତ୍ରଣ ପାଇ ସେ ଓଡ଼ିଶା ସରକାରଂକର ଜେନେଟିକସ୍ ଓ ବାଇଓମେଟ୍ରି ଲାବୋରୋଟୋରୀ ପ୍ରତିଷ୍ଠା କରିବା ସଂଗେସଂଗେ ତାର ନିର୍ଦ୍ଦେଶକ ଭାବରେ ଯୋଗ ଦେଇଥିଲେ । ଓଡ଼ିଶାର ନୈସର୍ଗୀକ ପ୍ରକୃତି ପରିବେଶ ମଧ୍ୟରେ ବଢ଼ି ଉଠିଥିବା ବିଭିନ୍ନ ପ୍ରକାରର ବନଲତା ଓ ସେମାନଂକ ଉହାଡ଼ରେ ଛପିଛପି ଘୁରିବୁଲୁଥିବା ବିଭିନ୍ନ ଜୀବଜନ୍ତୁ ତାଂକୁ ବୈଜ୍ଞାନିକ ଗବେଷଣା କରିବାପାଇଁ ଯଥେଷ୍ଟ ଖୋରାକ ଯୋଗାଇଥିଲା । ଭାରତର ହିନ୍ଦୁ ସଂସ୍କୃତି ଓ ପ୍ରଚଳିତ ପରମ୍ପରା ଉପରେ ପର୍ଯ୍ୟବସିତ କରି ଜୀବନ ଧାରଣ କରୁଥିବା ଅଗଣିତ ସଂପ୍ରଦାୟର ଲୋକମାନଂକ ଉପରେ ସେ ଅନେକ ଗବେଷଣା ଚଳାଇଥିଲେ । ତାଂକ ଜୀବନରେ ବିଶ୍ରାମ ନଥିଲା । ଅବିଶ୍ରାନ୍ତ ଭାବରେ ବୈଜ୍ଞାନିକ ଗବେଷଣା ଚାଲୁରଖିବା ସଂଗେସଂଗେ ବିଜ୍ଞାନର ପ୍ରସାର ପାଇଁ ସେ ଅନେକଗୁଡ଼ିଏ ଜନପ୍ରିୟ ବୈଜ୍ଞାନିକ ପ୍ରବନ୍ଧ ଓ ଗଳ୍ପ ବିଭିନ୍ନ ପତ୍ରପତ୍ରିକାରେ

ପ୍ରକାଶ କରୁଥିଲେ । ଜୀବନର ଶେଷ ସମୟ ପର୍ଯ୍ୟନ୍ତ ସେ ଓଡ଼ିଶାରେ ତାଂକର ଗବେଷଣା କାର୍ଯ୍ୟ ଚାଲୁରଖିଥିଲେ ।

ବିଜ୍ଞାନ ଜଗତକୁ ତାଂକର ମହନୀୟ ଅବଦାନ ପାଇଁ ସେ ଆନ୍ତର୍ଜାତିକ ସ୍ତରରେ ଅନେକଗୁଡ଼ିଏ ସମ୍ମାନଜନକ ପୁରସ୍କାରରେ ଅଳଂକୃତ ହୋଇଥିଲେ । ସେ ୧୯୩୨ ମସିହାରେ ବ୍ରିଟେନର ରୟାଲ ସୋସାଇଟିର ସଦସ୍ୟ ଭାବରେ ନିର୍ବାଚିତ ହୋଇଥିଲେ ଏବଂ ସେ ଜୈବ ବିବର୍ତ୍ତନବାଦ ଉପରେ ଗବେଷଣା ପାଇଁ ୧୯୫୩ ମସିହାରେ ଏହି ସୋସାଇଟି ଦ୍ୱାରା ସମ୍ମାନଜନକ ଡାରଉଇନ ମେଡାଲ ଦ୍ୱାରା ପୁରସ୍କୃତ ହୋଇଥିଲେ । ଯୁକ୍ତରାଷ୍ଟ୍ର ଆମେରିକାର ନ୍ୟାସନାଲ ଏକାଡେମୀ ଅଫ ସାଇନସ ଦ୍ୱାରା ପ୍ରଦତ୍ତ କିମ୍ବର ଜେନିଟିକସ୍ ପୁରସ୍କାର ସେ ୧୯୬୧ ମସିହାରେ ଲାଭକରିଥିଲେ ଏବଂ ୧୯୬୪ ମସିହାରେ ଏହି ଏକାଡେମୀର ବିଦେଶୀ ସଦସ୍ୟ ଭାବରେ ନିର୍ବାଚିତ ହୋଇଥିଲେ । ୧୯୬୧ ମସିହାରେ ଅକସଫୋର୍ଡ଼ ବିଶ୍ୱବିଦ୍ୟାଳୟ ତାଂକ ପିତାଂକର ଜନ୍ମଶତବାର୍ଷିକୀ ଉତ୍ସବ ପାଳନ ଅବସରରେ ତାଂକୁ ସମ୍ମାନ ସୂଚକ ଡକ୍ଟର ଅଫ ସାଇନସ୍ ଉପାଧିରେ ଭୂଷିତ କରିଥିଲା । ଇଟାଲୀର ରୋମଠାରେ ଏହି ବର୍ଷ ସେ ଫେଲଟ୍ରିନେଲୀ ପୁରସ୍କାର ଲାଭ କରିଥିଲେ । ଏତଦ୍‌ବ୍ୟତୀତ ଅନେକ ଇଉରୋପୀୟ ଦେଶ ତାଂକୁ ପୁରସ୍କୃତ କରି ବିଭିନ୍ନ ବିଜ୍ଞାନ ଏକାଡେମିର ବିଦେଶୀ ସଦସ୍ୟ ଭାବରେ ନିର୍ବାଚିତ କରିଥିଲେ ।

ପ୍ରଫେସର ହାଲଡେନ ଏକ ସାମନ୍ତବାଦୀ ସମାଜର ନାଗରିକ ହୋଇଥିଲେ ମଧ୍ୟ ସ୍ପେନୀୟ ଗୃହ ଯୁଦ୍ଧବେଳେ ସେ ନିଜକୁ କମ୍ୟୁନିଷ୍ଟ ଭାବରେ ଘୋଷଣା କରିଥିଲେ ଏବଂ କମ୍ୟୁନିଷ୍ଟ ଦଳ ଦ୍ୱାରା ଇଂଲଣ୍ଡରୁ ପ୍ରକାଶ ପାଉଥିବା ସମ୍ବାଦପତ୍ର "ଡେଲିୱାରକର"ର ସମ୍ପାଦକୀୟ ମଣ୍ଡଳୀର ଚେୟାରମ୍ୟାନ ଭାବରେ ୧୯୪୦-୧୯୪୯ ମସିହା ପର୍ଯ୍ୟନ୍ତ କାର୍ଯ୍ୟକରିଥିଲେ । ଏତଦ୍‌ବ୍ୟତୀତ କମ୍ୟୁନିଷ୍ଟ ଦଳ ଦ୍ୱାରା ଆୟୋଜିତ ବିଭିନ୍ନ ସଭା ସମିତିରେ ସେ ଭାଷଣ ପ୍ରଦାନ କରୁଥିଲେ । ମାତ୍ର ବିବଦମାନ ଜୈବବିଜ୍ଞାନବିତ୍ ଲାଇସେଙ୍କୋଙ୍କର ସୋଭିଏତ ଋଷରେ ଉତ୍‌ଥାନ ପରେ ସେ ମାର୍କସବାଦଠାରୁ ନିଜକୁ ଦୂରେଇ ଦେଇଥିଲେ ଏବଂ ୧୯୫୭ ମସିହାରେ ଭାରତକୁ ଚାଲିଯିବା ପରେ ତାଂକର ରାଜନୈତିକ କାର୍ଯ୍ୟକଳାପ ପ୍ରାୟ ବନ୍ଦ ହୋଇଯାଇଥିଲା ।

ପ୍ରଫେସର ହାଲଡେନ ଜଣେ ପ୍ରେରଣାଦାୟୀ ଶିକ୍ଷକ ଭାବରେ ଛାତ୍ର ମହଲରେ ସୁପରିଚିତ ଥିଲେ । ନିଜର ତୀକ୍ଷ୍ଣ ବୁଦ୍ଧି ଓ ପ୍ରଖର ସ୍ମରଣ ଶକ୍ତି ଯୋଗୁଁ ସେ ଅନେକ କଥା ମନେ ରଖିପାରୁଥିଲେ ଏବଂ ବିଭିନ୍ନ ବିଷୟରେ ଆଲୋଚନା କରି ଛାତ୍ରମାନଂକୁ ଗବେଷଣା କରିବାପାଇଁ ନୂତନ

ନୋବେଲ୍ ପୁରସ୍କାର ବଜେତା

ବୈଜ୍ଞାନକ ଏ. ଜେ. ପି. ମାର୍ଟିନ୍





ନୋବେଲ୍ ପୁରସ୍କାର ବଜେତା

ବୈଜ୍ଞାନକ ବୋରସ୍ ଚେନ୍

ଦିଗ୍‌ଦର୍ଶନ ଦେଇପାରୁଥିଲେ । ନିଜର ଛାତ୍ରମାନଂକର ସୁବିଧା ଅସୁବିଧା ସେ ବୁଝିବା ସହିତ ସେମାନଂକୁ ନିଜ ସଂଗରେ ଦେଶ ବିଦେଶର ବିଭିନ୍ନ ଗବେଷଣାଗାର ଓ ବିଶ୍ୱବିଦ୍ୟାଳୟମାନଂକୁ ନେଇଯାଉଥିଲେ । ଏଥି ନିମନ୍ତେ ସେ ପ୍ରଥମ ଶ୍ରେଣୀ ବିମାନ ଯାତ୍ରାରେ ଯିବାପାଇଁ ତାଂକୁ ନିମନ୍ତ୍ରଣ କରିଥିବା ସଂସ୍ଥାମାନଂକୁ ମନାକରିଦେଉଥିଲେ ଏବଂ ନିଜର ଛାତ୍ରମାନଂକର ଯାତ୍ରାଖର୍ଚ୍ଚ ତୁଲାଇବାକୁ ଅନୁରୋଧ କରୁଥିଲେ । ବିଭିନ୍ନ ଅନୁଷ୍ଠାନ ପରିଦର୍ଶନ କରିବାକୁ ଗଲାବେଳେ ସେ ଅନୁଷ୍ଠାନର ମୁଖ୍ୟମାନଂକ ସହ ଆଲୋଚନା କରିବା ପରିବର୍ତ୍ତେ ଯୁବବୈଜ୍ଞାନିକ ଓ ଛାତ୍ରମାନଂକ ସହ ଆଲୋଚନା କରିବାକୁ ବିଶେଷ ପସନ୍ଦ କରୁଥିଲେ । ସେ ଦେଶ ବିଦେଶର ବିଭିନ୍ନ ପତ୍ରପତ୍ରିକା ପାଇଁ ଜନପ୍ରିୟ ବିଜ୍ଞାନଗଳ୍ପ, ପ୍ରବନ୍ଧ ଇତ୍ୟାଦି ଲେଖି ପ୍ରଚୁର ଅର୍ଥ ଉପାର୍ଜ୍ଜନ କରୁଥିଲେ । ମାତ୍ର ସେ ନିଜେ ଏହି ଅର୍ଥ ଖର୍ଚ୍ଚ ନକରି ଛାତ୍ରମାନଂକର ଗବେଷଣା ଓ ଗସ୍ତଖର୍ଚ୍ଚ ପାଇଁ ବ୍ୟବହାର କରୁଥିଲେ । ପ୍ରଫେସର ହାଲଡେନଙ୍କର ଏହି ଛାତ୍ରବତ୍ସଳତା ତାଂକୁ ତାଂକର ଛାତ୍ରମାନଂକ ନିକଟରେ ଏହା ମହାନ୍ ବ୍ୟକ୍ତିତ୍ୱ ଭାବରେ ପରିଚିତ କରାଇ ପାରିଥିଲେ ।

—o—

## ୫

# ହାଲଡେନ୍ ଓ ହେଲେନ୍

୧୯୨୬ ମସିହାରେ ହାଲଡେନ୍ ଚାର୍ଲଟ ଭରଗୀଙ୍କୁ ବିବାହ କରିଥିଲେ । ଚାର୍ଲଟ ଜଣେ ସାମ୍ବାଦିକ ଓ ଲେଖକ ହିସାବରେ ସୁନାମ ଅର୍ଜନ କରିଥିଲେ । କିନ୍ତୁ ସେ ପ୍ରଫେସର ହାଲଡେନ୍‌ଙ୍କର ପତ୍ନୀ ହିସାବରେ ତାଂକ ସହ ତାଳମିଳାଇ ଚଳିପାରୁନଥିଲେ । ତାର କାରଣ ହେଲା ପ୍ରଫେସର ଜଣେ ପ୍ରତିଭାବାନ ବ୍ୟକ୍ତି ହେଲେ ମଧ୍ୟ ସରଳ ଓ ନିରାଡ଼ମ୍ବର ଜୀବନ ଯାପନ କରିବାକୁ ପସନ୍ଦ କରୁଥିଲେ । ବାହ୍ୟ ଆଡ଼ମ୍ବର, ଚାକଚକ୍ୟ ଓ ରାଜକୀୟ ଉପାଧିକୁ ନେଇ ବିଳାସ ବ୍ୟସନପୂର୍ଣ୍ଣ ଜୀବନ ଯାପନକୁ ସେ ନାପସନ୍ଦ କରୁଥିଲେ । ତଥାପି ପ୍ରଫେସର ହାଲଡେନ୍‌ଙ୍କୁ "ବ୍ରିଟଶ ଲର୍ଡସିପ୍" ଭଳି ସମ୍ମାନଜନକ ଉପାଧି ବଂଶଗତ ଉତ୍ତରାଧିକାର ସୂତ୍ରରେ ବ୍ରିଟିଶ ସରକାରଙ୍କ ଦ୍ୱାରା ପ୍ରଦାନ କରାଯାଇଥିଲା । କିନ୍ତୁ ସ୍ୱେନୀୟ ସାମାଜିକ ବିକଳ୍ପ ପରେ ସେ ନିଜକୁ କମ୍ୟୁନିଷ୍ଟ ଭାବରେ ଘୋଷଣା କରିବା ସଂଗେସଂଗେ "ବ୍ରିଟିଶ୍ ଲର୍ଡସିପ୍" ଉପାଧିକୁ ସ୍ୱତଃପ୍ରବୃତ୍ତ ଭାବରେ ବ୍ରିଟିଶ ସରକାରଂକ ନିକଟରେ ସମର୍ପଣ କରିଦେଇଥିଲେ । ଚାର୍ଲଟ ହାଲଡେନଙ୍କର ଏହି ପ୍ରକାର କାର୍ଯ୍ୟକୁ ସହଜ ଭାବରେ ଗ୍ରହଣ କରିପାରିନଥିଲେ ।

ପ୍ରଫେସର ହାଲଡେନ ନିଜର ସମୟର ସଦୁପଯୋଗ କରି ଅବିଶ୍ରାନ୍ତ ଭାବରେ ବୈଜ୍ଞାନିକ ଗବେଷଣାରେ ମନୋନିବେଶ କରିବାକୁ ଚାହୁଁଥିଲେ । କିନ୍ତୁ ଚାର୍ଲଟଙ୍କର ବୈଜ୍ଞାନିକ ଗବେଷଣା ଉପରେ ଆଦୌ ସ୍ପୃହା ନଥିଲା । ଏତଦ୍ ବ୍ୟତୀତ ପାଶ୍ଚାତ୍ୟ ଜଗତର ସୁଖ ସମ୍ଭୋଗ ଓ ବିଳାସ ବ୍ୟସନ ଭିତରେ ସେ କ୍ଲବ, ଡ୍ୟାନସ୍, ଭୋଜିଭାତରେ ସମୟ ଅତିବାହିତ କରିବାପାଇଁ ବିଶେଷ ଲାଳାୟିତ ଥିଲେ । ହାଲଡେନ ଚାର୍ଲଟଙ୍କୁ ଏସବୁ କାର୍ଯ୍ୟରେ ଆଦୌ ବାଧା ଦେଉନଥିଲେ । କିନ୍ତୁ ଦୁଇଟି ବିପରୀତ ଧର୍ମୀ ପୁରୁଷ ଓ ନାରୀଙ୍କର ବୈବାହିକ ଜୀବନରେ ଆନ୍ତରିକତା ଭିତରେ ଆସ୍ତେ ଆସ୍ତେ ଫାଟ ସୃଷ୍ଟି ହୋଇଥିଲା । ହାଲଡେନ ଓ ଚାର୍ଲଟ ଉଭୟ ପରସ୍ପର ମଧ୍ୟରେ ଆଲୋଚନା କରି ବିବାହ ବିଚ୍ଛେଦ କରିନେବା ପାଇଁ ସ୍ଥିର କରିଥିଲେ । କିନ୍ତୁ ତତ୍‌କାଳୀନ ବ୍ରିଟିଶ ବିବାହ ବିଚ୍ଛେଦ ଆଇନ ସେମାନଂକୁ ବଡ଼ ଅସୁବିଧାରେ ପକାଇଥିଲା । ବ୍ରିଟିଶ ବିବାହ ବିଚ୍ଛେଦ ଆଇନ ଅନୁସାରେ ବିବାହ ବିଚ୍ଛେଦ କରିବାକୁ ଚାହୁଁଥିବା ସ୍ୱାମୀ କିମ୍ବା ସ୍ତ୍ରୀକୁ ପ୍ରମାଣ କରିବାକୁ ହେବ ଯେ ସେମାନଂକ ମଧ୍ୟରୁ ଜଣେ ଅନ୍ୟ ଜଣକୁ ଅମାନୁଷିକ ନିର୍ଯ୍ୟାତନା ଦେଇଛି କିମ୍ବା ଜଣେ ପରପୁରୁଷ ବା ପର ସ୍ତ୍ରୀ ସହ ଆଇନ ଅସଂଗତ ସଂପର୍କ ରଖିଛି ।

ହାଲ୍‌ଡେନ୍‌ଙ୍କର ପତ୍ନୀ

ପ୍ରାଣୀବିଜ୍ଞାନବିତ୍

ହେଲେନ୍ ସ୍ପୁରୱେ





ଟସର ପୋକ

ହାଲଡେନ ଓ ଚାର୍ଲଟ ଉଭୟ ସମ୍ଭ୍ରାନ୍ତଶୀଳ ଓ ବୁଦ୍ଧିଜୀବୀ ପରିବାରର ସଦସ୍ୟ ଥିଲେ ଏବଂ ସେମାନଂକ ମଧ୍ୟରେ ଏଭଳି କୌଣସି ଅସଂଗତ ଘଟଣା ଘଟିନଥିଲା । ହାଲଡେନ ବ୍ରିଟିଶ ଆଇନକୁ ବ୍ୟଙ୍ଗକରି ଲଣ୍ଡନର ବିଶିଷ୍ଟ ପତ୍ରିକା ଡେଲିଓ୍ୱାରକରରେ "ମୁଁ କିପରି ବିବାହ ବିଚ୍ଛେଦ କଲି" ଶୀର୍ଷକ ଏକ ପ୍ରବନ୍ଧ ମାଧ୍ୟମରେ ନିଜର ମନୋବେଦନାର ପରିପ୍ରକାଶ କରିଥିଲେ । ହାଲଡେନ ଉକ୍ତ ପତ୍ରିକାରେ ଲେଖିଥିଲେ ଯେ ସେ ସମାଜର ପ୍ରତିଷ୍ଠିତ ଭଦ୍ରବ୍ୟକ୍ତିମାନଂକ ମଧ୍ୟରୁ ଜଣେ । ସେ ତାଂକର ପତ୍ନୀ ଚାର୍ଲଟଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରିଛନ୍ତି ଏଭଳି ମିଥ୍ୟା ପ୍ରମାଣ ଦେବାକୁ ସେ ଆଦୌ ଚାହୁଁନଥିଲେ । ତେଣୁ ସେ ବ୍ରାଇଟନ ହୋଟେଲରେ ଜଣେ ତଥାକଥିତ ଦୁଃଶ୍ଚରିତ୍ରା ମହିଳାଙ୍କ ସହ ବସବାସ କରୁଛନ୍ତି ବୋଲି ଅଦାଲତକୁ ଜଣାଇବାକୁ ବାଧ ହୋଇଥିଲେ ଏବଂ ଏହି ତଥ୍ୟ ଉପରେ ଅଦାଲତ ସେମାନଂକର ବିବାହ ବିଚ୍ଛେଦକୁ ସ୍ୱୀକୃତି ପ୍ରଦାନ କରିଥିଲା ।

୧୯୪୩ ମସିହାରେ ହାଲଡେନ୍‌ଙ୍କର ଦ୍ୱିତୀୟ ବିବାହ ହେଲେନ ସ୍ପୁରଓଯେଙ୍କ ସହିତ ସମ୍ପନ୍ନ ହୋଇଥିଲା । ହେଲେନ ଜୀବ ବିଜ୍ଞାନରେ ଡକ୍ଟରେଟ ଉପାଧି ଲାଭ କରିଥିଲେ । ସେ ବିଶ୍ୱବିଦ୍ୟାଳୟର ୟୁନିଭରସିଟି କଲେଜର ଛାତ୍ରୀ ଥିଲେ । ସେହି ବିଶ୍ୱବିଦ୍ୟାଳୟରେ ପ୍ରଫେସର ହାଲ୍‌ଡେନ୍ ଜଣେ ପ୍ରସିଦ୍ଧ ବୈଜ୍ଞାନିକ ଓ ଶିକ୍ଷକ ଭାବରେ ପରିଚିତା ଥିଲେ । ତାଂକର ଶିକ୍ଷାଦାନ ପ୍ରତି ଆକୃଷ୍ଟ ହୋଇ ହେଲେନ୍ ପ୍ରଥମେ ତାଂକର ଆନୁବଂଶିକୀ ବିଜ୍ଞାନର ଶ୍ରେଣୀରେ ବସି ତାଂକର ବକ୍ତୃତା ଶୁଣୁଥିଲେ । ଜୀବବିଜ୍ଞାନରେ ସ୍ନାତକୋତ୍ତର ଉପାଧି ଲାଭ କଲାପରେ ସେ ପ୍ରଫେସର ହାଲଡେନ୍‌ଙ୍କ ପାଖରେ ପି.ଏଚ୍.ଡ଼ି. କରିବାପାଇଁ ସ୍ଥିର କରିଥିଲେ । ସେ ହାଲଡେନଙ୍କ ଅଧୀନରେ ଡ୍ରସୋଫିଲା ମାଛିର ଆନୁବଂଶିକୀ ସମ୍ବନ୍ଧରେ ଗବେଷଣା କରି ୧୯୩୮ ମସିହାରେ ପି.ଏଚ୍.ଡ଼ି. ଡ଼ିଗ୍ରୀ ଲାଭ କରିଥିଲେ ।

ହାଲଡେନଙ୍କର ପ୍ରଥମ ପତ୍ନୀ ଚାର୍ଲଟଙ୍କ ସହ ବିବାହ ବିଚ୍ଛେଦ ହେଲାପରେ ହେଲେନ୍‌ଙ୍କ ସହ ଦ୍ୱିତୀୟ ବିବାହ ହୋଇଥିଲା ଏବଂ ଉଭୟ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ସାଂସାରିକ ବନ୍ଧନରେ ବାନ୍ଧି ହୋଇଯାଇଥିଲେ । ବୈଜ୍ଞାନିକ ମହଲରେ ହାଲଡେନ୍ ଓ ହେଲେନ୍ ବୈଜ୍ଞାନିକ ଦମ୍ପତି ଭାବରେ ସମ୍ମାନ ଲାଭ କରିଥିଲେ । ହାଲଡେନ୍ ଜଣେ ଉଗ୍ରସ୍ୱଭାବର ବ୍ୟକ୍ତି ଥିଲେ ଏବଂ

ସାମାନ୍ୟ ଭୁଲକୁ ମଧ୍ୟ ସହ୍ୟ କରିପାରୁନଥିଲେ । ତଥାପି ପାରିବାରିକ ଜୀବନରେ ହେଲେନ ସମସ୍ତ ଭୁଲକୁ ସୁଧାରି ନେଇ ହାଲଡେନଙ୍କର ସମସ୍ତ କାର୍ଯ୍ୟରେ ଯଥା ସମ୍ଭବ ସହାୟତା କରିଥିଲେ । ସେ ହାଲଡେନଙ୍କର ବୈଜ୍ଞାନିକ ଦୃଷ୍ଟିକୋଣକୁ ଖୁବ୍ ପସନ୍ଦ କରୁଥିଲେ ଏବଂ ତାଂକର ବୈଜ୍ଞାନିକ ଗବେଷଣାରେ ଯେଭଳି କୌଣସି ଅସୁବିଧା ନହୁଏ ସେଥିପ୍ରତି ବିଶେଷ ଦୃଷ୍ଟି ଦେଉଥିଲେ । ହାଲଡେନଂକର ପତ୍ର ପତ୍ରିକା, ବହି ଓ ଗବେଷଣା ସଂପର୍କୀୟ କାଗଜ ପତ୍ରଗୁଡ଼ିକୁ ଦାୟିତ୍ୱର ସହ ସଜାଡ଼ି ରଖୁଥିଲେ ଏବଂ ଘରେ କାମ କରୁଥିବା ଚାକର-ବାକରମାନଂକୁ ଏସବୁ ଜିନିଷରେ ନ ଲାଗିବାପାଇଁ ବାରମ୍ବାର ତାଗିଦ୍ କରୁଥିଲେ ।

ହାଲଡେନଙ୍କ ସହ ମିଶି ସେ କେତେକ ଗବେଷଣା କରିଥିଲେ ଏବଂ ଉଚ୍ଚକୋଟୀର ନିବନ୍ଧ ମଧ୍ୟ ଲେଖିଥିଲେ । ବିଶେଷକରି ସେ ବିଭିନ୍ନ ଜୀବଜନ୍ତୁଙ୍କର ସାମାଜିକ ଚାଲିଚଳନ ଉପରେ ଗବେଷଣା କରୁଥିଲେ ଏବଂ ସେମାନେ ଜୈବବିବର୍ତ୍ତନ ପ୍ରକ୍ରିୟାରେ କିଭଳି ଉତ୍ପତ୍ତି ଲାଭକରୁଛନ୍ତି ସେ ସଂପର୍କରେ ଜାଣିବାପାଇଁ ଚେଷ୍ଟା କରୁଥିଲେ । ହାଲେଡେନ ଏସବୁ ବିଷୟରେ ମଧ୍ୟ ଗବେଷଣା କରିବାପାଇଁ ପରବର୍ତ୍ତୀ କାଳରେ ଆଗ୍ରହ ପ୍ରକାଶ କରିଥିଲେ ।

ପ୍ରଫେସର ହାଲଡେନ୍ ଲଣ୍ଡନ ବିଶ୍ୱବିଦ୍ୟାଳୟ ଛାଡ଼ି ଭାରତକୁ ଦେଶାନ୍ତର ହୋଇଯିବାପାଇଁ ସ୍ଥିର କରିଥିଲେ ଏବଂ ହେଲେନ୍ ଏଥିରେ ବିବ୍ରତ ନହୋଇ ସ୍ୱାମୀଙ୍କ ସାଥୀରେ ଭାରତ ଚାଲିଆସିଥିଲେ । ଭାରତୀୟ ପରିସଂଖ୍ୟାନ ସଂସ୍ଥାରେ ସେ ଜଣେ ଗବେଷିକା ଭାବରେ ନିଯୁକ୍ତି ପାଇଥିଲେ ଏବଂ ସେଠାରେ ଟସର ପୋକ ଉନ୍ନୟନ ସଂପର୍କରେ ଗବେଷଣା କରିଥିଲେ । ଗବେଷଣା ପାଇଁ ସେ ବିହାରର ଗିରିଡିହ ଏବଂ ଜାମ୍ମୁକାଶ୍ମୀରରୁ ଏହି ଟସର ପୋକ ସଂଗ୍ରହ କରୁଥିଲେ । ଏଥିପାଇଁ ସେ ନିଜେ ଏହି ସ୍ଥାନଗୁଡ଼ିକୁ ଯାଉଥିଲେ । ବିହାରର ଗିରିଡିହ ଅଂଚଳରେ ଆଦିବାସୀ ସଂପ୍ରଦାୟର ଲୋକମାନେ ବିଭିନ୍ନ ପ୍ରକାର ଗଛରେ ଏହି ଟସର ପୋକ ପାଳନ କରୁଥିଲେ । ହେଲେନ୍ ଏହି ଗଛ ଓ ଟସର ପୋକ ପାଳନ ସଂପର୍କରେ ସେମାନଂକଠାରୁ ବିଭିନ୍ନ ତଥ୍ୟ ସଂଗ୍ରହ କରିଥିଲେ । ବିହାରରୁ ସଂଗ୍ରହ କରିଥିବା ଟସର ପୋକ ଦୁଇପ୍ରକାରର ଥିଲେ । ସେଗୁଡ଼ିକ ହେଲା ମୁଙ୍ଗା ଓ ଲୋଙ୍ଗା । ଉଭୟ ଜାତିର ଟସର ପୋକ ଗୋଟିଏ ପ୍ରକାରର ସଂବାଳୁଆରୁ ଜନ୍ମଲାଭ କରୁଥିଲେ । ମୁଂଗା ଜାତୀୟ ଟସର ପୋକର କୋଷା ଖୁବ୍ କଠିନ ଏବଂ ଲୋଂଗା ଜାତୀୟ ଟସର ପୋକର କୋଷାଠାରୁ ଏହା ଦୁଇଗୁଣ ଅଧିକ ଟସର ସିଲକ ପ୍ରଦାନ କରୁଥିଲା ।

କିନ୍ତୁ ଲୋଂଗା ଜାତୀୟ ଟସର ପୋକ ଗୁଡ଼ିକ ବର୍ଷାଦିନରେ କୋଷା ତିଆରି କରୁଥିବାରୁ ବହୁପରିମାଣରେ ମୃତାହତ ହେଉଥିଲେ । ଏହି ଦୁଇପ୍ରକାର ଟସର ପୋକଙ୍କର ଉନ୍ନୟନ ପାଇଁ ହେଲେନ ଗବେଷଣା କରି କେତେକ ନୂତନ ତଥ୍ୟ ପ୍ରଦାନ କରିଥିଲେ ।

ହେଲେନ ଜଣେ ସୁଗୃହିଣୀ ଥିଲେ । ତାଂକର କୌଣସି ସନ୍ତାନ ସନ୍ତତି ନଥିଲେ । ତେଣୁ ସମସ୍ତ ସମୟ ସେ ଗବେଷଣା ଓ ଗବେଷଣା ସମ୍ବନ୍ଧୀୟ କାର୍ଯ୍ୟରେ ଲଗାଇ ସମୟ ଅତିବାହିତ କରୁଥିଲେ । ହାଲଡେନ ଆନ୍ତର୍ଜାତୀୟ ସ୍ତରରେ ଜଣେ ବିଶିଷ୍ଟ ବୈଜ୍ଞାନିକ ହୋଇଥିବା ଯୋଗୁଁ ସେ ତାଂକ ସହ ବିଭିନ୍ନ ଦେଶ ଓ ଗବେଷଣାଗାର ବୁଲିବାର ସୁଯୋଗ ଲାଭ କରିଥିଲେ । ଆନ୍ତର୍ଜାତୀୟ ଗବେଷଣାଗାର ଗୁଡ଼ିକ ଦ୍ୱାରା ଆୟୋଜିତ ସେମିନାର ସଭା ସମିତିରେ ମଧ୍ୟ ଉଚ୍ଚକୋଟୀର ନିବନ୍ଧ ପାଠ କରି ସେ ସମ୍ମାନିତା ହୋଇଥିଲେ । ନିଜର ବିଦ୍‌ବତ୍ତା ଯୋଗୁଁ ହାଲଡେନ୍ ସମସାମୟିକ ବୈଜ୍ଞାନିକ ମହଲରେ ଉଚ୍ଚ ସମ୍ମାନ ଓ ପ୍ରଶଂସାର ଅଧିକାରୀ ହୋଇପାରିଥିଲେ । ଏଣୁ କୌଣସି ବ୍ୟକ୍ତି ତାଂକ ସହ ପରାମର୍ଶ କରିବାକୁ ଚାହିଁଲେ ମଧ୍ୟ ସାହସ କରି କହି ପାରୁନଥିଲେ । ଏଭଳି ପରିସ୍ଥିତିରେ ହେଲେନ ଏହି ଆଗ୍ରହୀ ବୈଜ୍ଞାନିକ ବା ଗବେଷକଙ୍କୁ ହାଲଡେନଙ୍କ ସହ ପରିଚୟ କରାଇ ଦେଇ ଯଥା ସମ୍ଭବ ସାହାଯ୍ୟ କରୁଥିଲେ ।

ହେଲେନ୍ ପ୍ରଫେସର ହାଲଡେନ୍‌ଙ୍କ ସହ ୧୯୬୧ ମସିହାରେ ଭାରତର ସ୍ଥାୟୀ ନାଗରିକତ୍ୱ ଗ୍ରହଣ କରିଥିଲେ । ସେ ଭାରତର ସଭ୍ୟତା ସଂସ୍କୃତି ଓ ପରମ୍ପରାକୁ ଖୁବ୍ ଭଲ ପାଇବସିଥିଲେ । ଖ୍ରୀଷ୍ଟଧର୍ମ ଓ ପରମ୍ପରାକୁ ପରିତ୍ୟାଗ କରି ସେ ହିନ୍ଦୁ ଧର୍ମକୁ ଆଦରି ନେଇଥିଲେ । ପ୍ରଫେସର ହାଲଡେନ୍‌ଙ୍କୁ ଅନୁକରଣ କରି ସେ ନିରାମିଷାଶୀ ହୋଇଯାଇଥିଲେ ଏବଂ ହିନ୍ଦୁ ଦେବାଦେବୀଙ୍କୁ ବିଶ୍ୱାସ କରୁଥିଲେ । ପ୍ରଫେସର ହାଲଡେନଙ୍କ ମୃତ୍ୟୁପରେ ସେ ଜଣେ ହିନ୍ଦୁ ବିଧବା ଭଳି ରହିବାପାଇଁ ପସନ୍ଦ କରିଥିଲେ ଓ ନିଜର ପାରମ୍ପରିକ ପୋଷାକ ପରିତ୍ୟାଗକରି ହିନ୍ଦୁ ବିଧବାଙ୍କ ଭଳି ଧଳା କିମ୍ବା ଗେରୁଆ ରଂଗର ଶାଢ଼ୀ ପିନ୍ଧୁଥିଲେ । ହାଲଡେନଙ୍କ ମୃତ୍ୟୁପରେ ସେ ଓଡ଼ିଶା ଛାଡ଼ି ହାଇଦରାବାଦ ଚାଲିଯାଇଥିଲେ ଏବଂ ୧୯୭୮ ମସିହାରେ ମୃତ୍ୟୁ ଲାଭ କରିଥିଲେ ।

—o—

## ୬

# ଦୁଃସାହସୀ ଗବେଷକ

ଜୀବବିଜ୍ଞାନବିତ୍‌ମାନେ ମାନବୀୟ ଶରୀରତତ୍ତ୍ୱ ଓ ଚିକିତ୍ସା ବିଜ୍ଞାନ ସମ୍ବନ୍ଧୀୟ ଗବେଷଣା କଲାବେଳେ ବିଶେଷ କରି ଠେକୁଆ, ମାଙ୍କଡ଼, ଗିନିପିଗ୍ ଇତ୍ୟାଦିଙ୍କୁ ପରୀକ୍ଷାର ପ୍ରାଣୀ ହିସାବରେ ବ୍ୟବହାର କରିଥାନ୍ତି। କାରଣ ଏହି ପ୍ରାଣୀଗୁଡ଼ିକର ମଣିଷର ଶରୀର ଓ କାର୍ଯ୍ୟକଳାପ ସହ କିଛି ସାମଞ୍ଜସ୍ୟ ରହିଛି। ଏହି ପ୍ରକାର ପରୀକ୍ଷା କଲାବେଳେ ଠେକୁଆ କିମ୍ବା ମାଙ୍କଡ଼ ଦେହରେ ବିଭିନ୍ନ ପ୍ରକାରର ରୋଗ ଜୀବାଣୁ, ପରୀକ୍ଷା କରାଯାଇ ନଥିବା ଔଷଧ ଇଞ୍ଜେକସନ ମାଧ୍ୟମରେ ପ୍ରବେଶ କରାଇ ଏଗୁଡ଼ିକ କି ପ୍ରକାର ପ୍ରଭାବ ପକାଉଛି ତାହା ପର୍ଯ୍ୟବେକ୍ଷଣ କରନ୍ତି। ଏହି ପର୍ଯ୍ୟବେକ୍ଷଣ ଗୁଡ଼ିକୁ ବିଶ୍ଳେଷଣ କରି ଜୀବବିଜ୍ଞାନୀମାନେ ଔଷଧ ଓ ରୋଗଜୀବାଣୁ ଇତ୍ୟାଦିର ପ୍ରୟୋଗ ଯୋଗୁଁ ପ୍ରାଣୀ ଦେହରେ ହୋଇଥିବା ସୁଫଳ ଓ କୁପରିଣାମ ସମ୍ପର୍କରେ ବିଭିନ୍ନ ଅନୁସିଦ୍ଧାନ୍ତରେ ପହଞ୍ଚିଥାନ୍ତି। ସାଧାରଣତଃ ଠେକୁଆ ଦେହରେ ବିଷାକ୍ତ ଔଷଧ ପ୍ରୟୋଗ କଲାପରେ ତାର ପ୍ରଭାବ ଯୋଗୁଁ ଠେକୁଆ ଅସହ୍ୟ ଯନ୍ତ୍ରଣାରେ ଛଟପଟ ହୁଏ। ପ୍ରୟୋଗ କରାଯାଇଥିବା ଔଷଧର ପରିମାଣ ଓ ପ୍ରକାର ଭେଦ ଅନୁଯାୟୀ ତାର ନିଶ୍ୱାସ ପ୍ରଶ୍ୱାସର ଗତି ଓ ରକ୍ତର ପରିମାଣରେ ପରିବର୍ତ୍ତନ ହୋଇଥାଏ ଏବଂ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗରେ ବିଭିନ୍ନ ପ୍ରକାରର ଲକ୍ଷଣ ପ୍ରକାଶ ପାଇଥାଏ। ବେଳେ ବେଳେ ବିଷାକ୍ତତାର ପରିମାଣ ଅଧିକ ହେଲେ ଅସହ୍ୟ ଯନ୍ତ୍ରଣାର ଶିକାର ହୋଇ ଠେକୁଆ ପ୍ରାଣତ୍ୟାଗ କରେ।

ଜୀବବିଜ୍ଞାନବିତ୍‌ମାନେ ଠେକୁଆ, ମାଙ୍କଡ, ଗିନିପିଗ୍ ଇତ୍ୟାଦିକୁ ପରୀକ୍ଷାର ପ୍ରାଣୀ ଭାବରେ ବ୍ୟବହାର କରି ଏ ପ୍ରକାରର ଅମାନୁଷିକ ଯନ୍ତ୍ରଣା ଦେବାକୁ ଚାହୁଁ ନଥିଲେ ମଧ୍ୟ ବିଜ୍ଞାନର ଅଗ୍ରଗତି ଲାଗି ଏହି ସବୁ ପରୀକ୍ଷା ବାଧ୍ୟତାମୂଳକ ଭାବରେ କରିଥାଆନ୍ତି। କିନ୍ତୁ ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ ଯେ ପ୍ରଫେସର ହାଲ୍‌ଡ଼େନ୍ ଠେକୁଆ ଦେହରେ ବିଷାକ୍ତ ପଦାର୍ଥ ପ୍ରୟୋଗ କରି ମାନବୀୟ ଶରୀରତତ୍ତ୍ୱ ସମ୍ପର୍କରେ ଗବେଷଣା କରିବା ପରିବର୍ତ୍ତେ ନିଜେ କେତେକ ବିଷାକ୍ତ ପଦାର୍ଥ ଖାଇ ସେଗୁଡ଼ିକ ତାଙ୍କ ଶରୀର ଉପରେ କି ପ୍ରକାର ପ୍ରଭାବ ପକାଉଛି ତାହା ଜାଣିବାକୁ ଅନେକଥର ଚେଷ୍ଟା କରିଥିଲେ। ପ୍ରଫେସର ହାଲ୍‌ଡ଼େନ୍



ସବ୍‌ମେରାଇନ୍‌ଟିଏ ବୁଡ଼ିଯାଉଛି

ବୁଡାଳୀଟି ପର୍ଯ୍ୟବେକ୍ଷଣ କରୁଛି

ତାଙ୍କର ଏହି ଦୁଃସାହସିକ ପଦକ୍ଷେପ ସଂପର୍କରେ ମତଦେଇ କହିଥିଲେ ଯେ ଯେହେତୁ ପରୀକ୍ଷାରେ ବ୍ୟବହୃତ ହେଉଥିବା ଠେକୁଆଗୁଡ଼ିକ କଥା କହି ପାରନ୍ତି ନାହିଁ ସେଗୁଡ଼ିକୁ ଗବେଷଣାରେ ବ୍ୟବହାର କଲେ ତାଙ୍କର କେଉଁ ଅଙ୍ଗରେ କି ପ୍ରକାର ପ୍ରଭାବ ପଡ଼ି କିଭଳି ଯନ୍ତ୍ରଣା ହେଉଛି ସେକଥା ବୈଜ୍ଞାନିକମାନେ ସଠିକ୍ ଭାବରେ ଜାଣିପାରନ୍ତି ନାହିଁ। ଏହି ଅସୁବିଧାକୁ ଦୂରକରିବାକୁ ହେଲେ ଠେକୁଆ ପରିବର୍ତ୍ତେ ସ୍ୱେଚ୍ଛାସେବୀ ମଣିଷ ଦେହରେ ସିଧା ସଳଖ ଏହି ପରୀକ୍ଷା କରାଯିବା ଉଚିତ୍। ଏତଦ୍‌ଦ୍ୱାରା ସଠିକ୍ ଫଳାଫଳ ଜାଣିବା ସଙ୍ଗେ ସଙ୍ଗେ ଉପଯୁକ୍ତ ପ୍ରତିକାରର ବ୍ୟବସ୍ଥା ମଧ୍ୟ କରାଯାଇ ପାରିବ। ଏହି ଦୁଃସାହସିକ ଚିନ୍ତାଧାରା ଉପରେ ଭିତ୍ତିକରି ପ୍ରଫେସର ହାଲ୍‌ଡ଼େନ୍ କେତେକ ସହଯୋଗୀଙ୍କ ସହାୟତା ନେଇ ନିଜ ଉପରେ ଓ ସେମାନଙ୍କ ଉପରେ କେତେକ ଭୟାବହ ଗବେଷଣା ଚଳାଇ ଶରୀରତତ୍ତ୍ୱ ଓ ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଚାଞ୍ଚଲ୍ୟ ସୃଷ୍ଟି କରିଦେଇଥିଲେ।

ମଣିଷ ରକ୍ତର ଅମ୍ଳତା କିମ୍ବା କ୍ଷାରୀୟତା ବୃଦ୍ଧି ପାଇଲେ ମଣିଷର ମାନସିକ ଓ ଶାରୀରିକ ସ୍ତରରେ କି କି ପ୍ରଭାବ ପଡ଼ିବ ସେ ସଂପର୍କରେ ପ୍ରଫେସର ହାଲ୍‌ଡ଼େନ୍ ପ୍ରଫେସର ଡ଼ାଭିସ୍‌ଙ୍କ ସହଯୋଗରେ ଏକ ଗବେଷଣା ନିଜ ଉପରେ କରିଥିଲେ। ରକ୍ତର କ୍ଷାରୀୟତା ବୃଦ୍ଧି କରିବା ପାଇଁ ପ୍ରଫେସର ହାଲ୍‌ଡ଼େନ୍ ଓ ପ୍ରଫେସର ଡ଼ାଭିସ୍ ପ୍ରତ୍ୟେକେ ଦୁଇ ତିନି ଆଉନସ୍ ଓଜନର ବାଇକାର୍ବୋନେଟ୍ ସୋଡ଼ା ଏକ ସମୟରେ ଖାଇଥିଲେ। ରକ୍ତର ଅମ୍ଳତା ବୃଦ୍ଧି କରିବା ପାଇଁ ତରଳ ହାଇଡ୍ରୋକ୍ଲୋରିକ୍ ଅମ୍ଳ ପିଇବା ଅସମ୍ଭବ ହେବା ଯୋଗୁଁ ସେମାନେ ପ୍ରତିଦିନ ଏକ ଆଉନସ୍ ହିସାବରେ ବିଷାକ୍ତ ଆମୋନିୟମ କ୍ଲୋରାଇଡ଼୍ ଦୁଇ ତିନି ଦିନ ପର୍ଯ୍ୟନ୍ତ ଭକ୍ଷଣ କରିଥିଲେ।

କାରଣ ଆମୋନିୟମ କ୍ଲୋରାଇଡ୍ ଶରୀରରେ ପ୍ରବେଶ କଲାପରେ ହାଇଡ୍ରୋକ୍ଲୋରିକ ଅମ୍ଳରେ ପରିଣତ ହୋଇ ରକ୍ତର ଅମ୍ଳତା ବୃଦ୍ଧି କରିପାରିବ। ହାଲ୍‌ଡ଼େନ୍‌ଙ୍କର ଏହି ଦୁଃସାହସିକ ଗବେଷଣା ସମସ୍ତଙ୍କ ମନରେ ଏକ ଅଜଣା ଭୟ ଓ ଉତ୍କଣ୍ଠା ସୃଷ୍ଟି କରିଦେଇଥିଲା। ବିଷାକ୍ତ ପଦାର୍ଥ ଅତ୍ୟଧିକ ପରିମାଣରେ ଖାଇ ରକ୍ତର ଅମ୍ଳତା ଓ କ୍ଷାରୀୟତା ବୃଦ୍ଧି କରିବା ଫଳରେ ହାଲ୍‌ଡ଼େନ୍‌ଙ୍କ ସ୍ୱାସ୍ଥ୍ୟ ଉପରେ ଏହାର କି ପ୍ରକାର ପ୍ରଭାବ ପଡ଼ିବ ସେ ସଂପର୍କରେ ସମସ୍ତେ ଖୁବ୍ ଚିନ୍ତିତ ଥିଲେ।

ଦୁଇ ତିନିଦିନ ପର୍ଯ୍ୟନ୍ତ କ୍ରମାଗତ ଭାବରେ ଆମୋନିୟମ କ୍ଲୋରାଇଡ଼ ଖାଇବା ଫଳରେ ହାଲ୍‌ଡ଼େନ୍‌ଙ୍କ ରକ୍ତର ଅମ୍ଳତା ବୃଦ୍ଧି ପାଇଥିଲା । ଏହାର ଫଳ ସ୍ୱରୂପ ତାଙ୍କର ନିଶ୍ୱାସ ପ୍ରଶ୍ୱାସର ଗତି ଧିମେଇ ଯାଇଥିଲା; ଓଜନ ଆସ୍ତେ ଆସ୍ତେ କମି ଯାଇଥିଲା; ରକ୍ତହୀନତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ରକ୍ତର ଶର୍କରା, ଫସ୍‌ଫରସ୍ ଓ ଅନ୍ୟାନ୍ୟ ରାସାୟନିକ ପଦାର୍ଥର ପରିମାଣର କମ୍ ବେଶୀ ହୋଇଥିଲା । ହାଲ୍‌ଡ଼େନ୍‌ଙ୍କ ଦେହରେ ପ୍ରକାଶ ପାଇଥିବା ଲକ୍ଷଣ ଗୁଡ଼ିକର ବହୁମୂତ୍ର ଓ ବୃକକ୍ ରୋଗର ଶେଷ ଅବସ୍ଥାରେ ପ୍ରକାଶ ପାଉଥିବା ଲକ୍ଷଣ ସହ ଯଥେଷ୍ଟ ସାମଞ୍ଜସ୍ୟ ଥିଲା । ହାଲ୍‌ଡ଼େନ୍‌ଙ୍କର ଏହି ଦୁଃସାହସିକ ଗବେଷଣାର ସିଦ୍ଧାନ୍ତ ଉପରେ ଭିତ୍ତିକରି ଡ଼କ୍ଟର ଫ୍ରଡ଼େନବର୍ଗ ଓ ଜର୍ଜି ଶିଶୁମାନଙ୍କର ଟିଟାନି ରୋଗର ଉପଶମ ପାଇଁ ଉପଯୁକ୍ତ ପ୍ରତିକାର ବ୍ୟବସ୍ଥା ଓ ଔଷଧ ଉଦ୍ଭାବନ କରିବାକୁ ସକ୍ଷମ ହୋଇପାରିଥିଲେ ।

ଖଣି ଭିତରେ କାର୍ବନ ମନୋକସାଇଡ୍ ଗ୍ୟାସର ଆଧିକ୍ୟ ଯୋଗୁଁ ଖଣି ଭିତରେ କାମ କରୁଥିବା ଶ୍ରମିକମାନଙ୍କର ସ୍ୱାସ୍ଥ୍ୟର ଅବନତି ହୋଇଥାଏ । କାର୍ବନ ମନୋକସାଇଡ୍ ଗ୍ୟାସ ମଣିଷ ଶରୀର ଉପରେ କି ପ୍ରକାର ପ୍ରଭାବ ପକାଇଥାଏ ସେ ସଂପର୍କରେ ଜାଣିବା ପାଇଁ ପ୍ରଫେସର ହାଲ୍‌ଡ଼େନ୍ କାର୍ବନ ମନୋକସାଇଡ଼ ଗ୍ୟାସ ପୂର୍ଣ୍ଣ ରଦ୍ଧ କୋଠରୀ ମଧ୍ୟରେ ରହି ନିଜ ଉପରେ ଗବେଷଣା କରିଥିଲେ । ଉକ୍ତ ଗବେଷଣାରୁ ସେ ସିଦ୍ଧାନ୍ତରେ ଉପନୀତ ହେଲେ ଯେ କାର୍ବନ ମନୋକସାଇଡ଼ ଗ୍ୟାସର ପରିମାଣ ବୃଦ୍ଧି ପାଇଲେ ରକ୍ତର ହିମୋଗ୍ଲୋବିନ କ୍ଷୟପ୍ରାପ୍ତ ହୋଇଥାଏ ଏବଂ ଏହା ଯୋଗୁଁ ତନ୍ତୁ ଓ କୋଷଗୁଡ଼ିକ ନଷ୍ଟ ହୋଇ ମୃତ୍ୟୁ ଲାଭ କରନ୍ତି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ୧୯୩୯ ମସିହା ଜୁନ୍ ମାସରେ ବ୍ରିଟିଶ୍ ସବ୍‌ମେରାଇନ୍ ଥେଟିସ୍ ଆକସ୍ମିକ ଭାବରେ ଦୁର୍ଘଟଣାର ସମ୍ମୁଖୀନ ହୋଇ ଫିନଲ୍ୟାଣ୍ଡ ଉପକୂଳରେ ବୁଡ଼ିଯାଇଥିଲା ଏବଂ ଏଥିରେ ଥିବା ନୌବାହିନୀର ଅଫିସର ଓ ଜୱାନମାନେ ମୃତ୍ୟୁ ବରଣ କରିଥିଲେ । ବ୍ରିଟିଶ ନୌବାହିନୀର ଅନୁରୋଧ କ୍ରମେ ପ୍ରଫେସର ହାଲ୍‌ଡ଼େନ୍ ନିଜର ସ୍ତ୍ରୀ ହେଲେନ୍ ଓ କେତେକ ସ୍ୱେଚ୍ଛାସେବୀଙ୍କ ସହ ଦୀର୍ଘ ଅଠଚାଳିଶ ଘଣ୍ଟା ପର୍ଯ୍ୟନ୍ତ ବାୟୁରଦ୍ଧ କୋଠରୀ ମଧ୍ୟରେ ରହି ମଣିଷ ଶରୀର ଉପରେ ରଦ୍ଧ ବାୟୁର ପ୍ରଭାବ ସମ୍ପର୍କରେ ଗବେଷଣା କରିଥିଲେ ।

ଏତଦ୍‌ବ୍ୟତୀତ ଗଭୀର ଜଳରେ ବୁଡ଼ାଳୀମାନେ କି କି ସମସ୍ୟାର ସମ୍ମୁଖୀନ ହେଉଛନ୍ତି ସେ ସଂପର୍କରେ ସେ ଏକ ଗବେଷଣା ଚଳାଇଥିଲେ। ଯେଉଁ ବୁଡ଼ାଳୀମାନେ ଗଭୀର ଜଳରୁ ଉପରକୁ ଖୁବ୍ ଶୀଘ୍ର ଉଠିଆସିବାକୁ ଚେଷ୍ଟା କରୁଛନ୍ତି କିମ୍ବା ସବ୍‌ମେରାଇନ୍ ଦୁର୍ଘଟଣା ପରେ ନାବିକ ଓ ସୈନ୍ୟମାନେ ଗଭୀର ଜଳରୁ ଉପରକୁ ଶୀଘ୍ର ଆସି ରକ୍ଷା ପାଇବାକୁ ଚେଷ୍ଟା କରୁଛନ୍ତି, ସେମାନଙ୍କର ଶରୀର ଉପରେ ଗଭୀର ଜଳର ଚାପ ଓ ଦ୍ରୁତ ଗତି କି ପ୍ରକାର ପ୍ରଭାବ ପକାଉଛି ସେ ସଂପର୍କରେ ଗବେଷଣା ଚଳାଇଥିଲେ। ଏହି ଗବେଷଣା ପୂର୍ବ ବର୍ଣ୍ଣିତ ଗବେଷଣା ଗୁଡ଼ିକଠାରୁ ଖୁବ୍ ଭୟଙ୍କର ଥିଲା। ସେ ଏହି ଗବେଷଣା ବେଳେ ମେରୁଦଣ୍ଡରେ ଆଘାତପ୍ରାପ୍ତ ହୋଇ ପ୍ରଚୁର ବାନ୍ତି କରିଥିଲେ ଏବଂ ଏହାର ଫଳ ସ୍ୱରୂପ ଅନେକ ବର୍ଷ ପର୍ଯ୍ୟନ୍ତ ମେରୁଦଣ୍ଡରେ ଯନ୍ତ୍ରଣା ଲାଭ କରିଥିଲେ। ଏଥିଯୋଗୁଁ ସେ ଜୀବନର ଅବଶିଷ୍ଟ କାଳ ସିଧା ଚଉକିରେ ବସିବାକୁ ଅକ୍ଷମ ହୋଇ ପଡ଼ିଥିଲେ ଏବଂ ଅଳ୍ପ ଉଚ୍ଚତା ବିଶିଷ୍ଟ ଆର୍ମ ଚେୟାରରେ ବସୁଥିଲେ। ପ୍ରଫେସର ହାଲ୍‌ଡ଼େନ୍ ଏହି ଗବେଷଣା ଯୋଗୁଁ ଅତ୍ୟଧିକ ଯନ୍ତ୍ରଣା ପାଇଲେ ମାତ୍ର ବୁଡ଼ାଳୀମାନଙ୍କର ସୁରକ୍ଷା ପାଇଁ କେତୋଟି ଉପାଦେୟ ତଥ୍ୟ ଦେବାକୁ ସକ୍ଷମ ହୋଇପାରିଥିଲେ।

ପ୍ରଫେସର ହାଲ୍‌ଡ଼େନ୍ ଅତ୍ୟଧିକ ଗରମ ଯୋଗୁଁ ଗ୍ରୀଷ୍ମକାଳରେ ହେଉଥିବା "ସନଷ୍ଟ୍ରୋକ"ର କାରଣ ସଂପର୍କରେ ଅନୁଧ୍ୟାନ କରିଥିଲେ। ସେ ସମୟରେ ଧାରଣା ଥିଲା ଅତ୍ୟଧିକ ଉତ୍ତାପ ଯୋଗୁଁ ମସ୍ତିଷ୍କ ଓ ମେରୁଦଣ୍ଡର ମଜ୍ଜା ଅଧିକ ଗରମ ହୋଇଯିବା ଫଳରେ ଗ୍ରୀଷ୍ମକାଳରେ ଲୋକମାନେ "ସନ ଷ୍ଟ୍ରୋକ"ରେ ପୀଡ଼ିତ ହୁଅନ୍ତି। ଏହି ଉକ୍ତିର ସତ୍ୟତା ଉପରେ ଗବେଷଣା କରିବାକୁ ଯାଇ ସେ ପ୍ରତିଦିନ ଗ୍ରୀଷ୍ମକାଳୀନ ଖରାରେ କ୍ରମାଗତ ଭାବରେ ଘଣ୍ଟା ଘଣ୍ଟା ଧରି ବସୁ ରହୁଥିଲେ ଏବଂ ନିଜ ମୁଣ୍ଡ ଉପରେ ଓ ପିଠିରେ ବେଳେ ବେଳେ ପାଣି ଢ଼ାଳୁଥିଲେ। ଏଭଳି ଅନେକ ଦିନ ପର୍ଯ୍ୟନ୍ତ ବସିବା ପରେ ମଧ୍ୟ ସେ "ସନ ଷ୍ଟ୍ରୋକ"ରେ ପୀଡ଼ିତ ହେଲେ ନାହିଁ। କିନ୍ତୁ ଏହାର ଫଳ ସ୍ୱରୂପ "ସନ ବର୍ଣ୍ଣ"ର ଲକ୍ଷଣ ତାଙ୍କ ଦେହରେ ପ୍ରକାଶ ପାଇଥିଲା।

ବାସ୍ତବରେ ପ୍ରଫେସର ହାଲ୍‌ଡ଼େନ୍ ଶରୀରତତ୍ତ୍ୱ ବିଜ୍ଞାନର ଜଣେ ମହାନ୍ ବ୍ୟକ୍ତିତ୍ୱ ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ। ଜୀବନକୁ ବିପନ୍ନ କରି ବିଭିନ୍ନ ପରୀକ୍ଷା ପାଇଁ ନିଜ ଶରୀରକୁ ସ୍ୱେଚ୍ଛାସେବୀ ଭାବରେ ବୈଜ୍ଞାନିକମାନଙ୍କୁ

ପ୍ରଦାନ କରିବା ଏ ଦୁନିଆରେ ସବୁଠାରୁ ବିରଳ ଘଟଣା। କିନ୍ତୁ ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ଏହି ଦୁଃସାହସିକ ପଦକ୍ଷେପ ବିଜ୍ଞାନ ଜଗତକୁ ଅନେକ ନୂତନ ତଥ୍ୟ ଦେଇ ପାରିଥିଲା ଏବଂ ଜନ ସମୁଦାୟଙ୍କ ଦୃଷ୍ଟିରେ ତାଙ୍କ ପ୍ରତି ଭକ୍ତି ଓ ଶ୍ରଦ୍ଧାର ଉଦ୍ରେକ କରିଥିଲା। ତାଙ୍କର ଏହି ମାନବୀୟ ଶରୀରତତ୍ତ୍ୱ ସଂପର୍କୀୟ ଗବେଷଣାରେ ଅନୁପ୍ରାଣୀତ ହୋଇ ଜଣେ ଲେଖକ ଏକ ଇଂରାଜୀ କବିତା ଲେଖିଥିଲେ:—

*What, teacher can that object be inside a plateglass drum?*
*It is Prof. Haldane whom you see, testing a vacuum.*
*Why are they hurling bombs so near that shelter made of tin?*
*That is a bomb proof test; I hear Prof Haldane is within.*
*Oh look, from yon ballon so high what dangles large and limp?*
*It is Prof. Haldane we espy, air-testing from a bliup.*
*See drifting near that waterside that bouy of strange design!*
*That is Prof. Haldane, tied decoying a mine.*
*On sea, on shore, and in the air, protecting us from harm,*
*Prof. Haldane meets us everywhere, our scientific arm.*

କିନ୍ତୁ ଏହି ସବୁ ଦୁଃସାହସିକ ଗବେଷଣା ଯୋଗୁଁ ସେ ରୋଗାକ୍ରାନ୍ତ ହୋଇ ଶେଷ ଜୀବନରେ ଦୁଃସାଧ୍ୟ କର୍କଟ ରୋଗରେ ପୀଡ଼ିତ ହୋଇଥିଲେ। ତଥାପି ସେ ଭୟଭୀତ ହୋଇ ଯାଇନଥିଲେ, ନିଜର ବୈଜ୍ଞାନିକ ଗବେଷଣାକୁ ଚାଲୁରଖି ଓଡ଼ିଶାରେ ମୃତ୍ୟୁବରଣ କରିଥିଲେ। ପ୍ରଫେସର ହାଲ୍‌ଡ଼େନ୍ ଆଜି ନାହାନ୍ତି ସତ, ତାଙ୍କର ମଣିଷ ସମାଜର ଉନ୍ନତି ଓ ବୈଜ୍ଞାନିକ ପ୍ରଗତିପାଇଁ ଏହି ଅବଦାନ ତାଙ୍କୁ ସ୍ମରଣୀୟ କରି ରଖିଛି।

—o—

# ୭

# ଭାରତର ନାଗରିକ

ପ୍ରଫେସର ହାଲ୍‌ଡ଼େନ୍ ଜଣେ ଶାନ୍ତିପ୍ରିୟ ନାଗରିକ ଥିଲେ। ବ୍ରିଟିଶ ସରକାରଙ୍କର ସାମ୍ରାଜ୍ୟବାଦ ନୀତି ଓ ଇଂରେଜ ଅଧିକୃତ ଦେଶଗୁଡ଼ିକର ଅର୍ଥନୈତିକ ଶୋଷଣକୁ ସେ ଆଦୌ ପସନ୍ଦ କରୁନଥିଲେ। ବ୍ରିଟିଶ ସରକାରଙ୍କର ଏହି ଜନସ୍ୱାର୍ଥ ବିରୋଧି ନୀତିଗୁଡ଼ିକୁ ସମାଲୋଚନା କରି ବ୍ରିଟେନର ପ୍ରମୁଖ ସମ୍ବାଦପତ୍ର ଗୁଡ଼ିକରେ ସେ ଅନେକ ଲେଖା ପ୍ରକାଶ କରୁଥିଲେ। ୧୯୫୭ ମସିହାରେ ଇଜିପଟ୍ ସୁଏଜ୍ କେନାଲର ଜାତୀୟକରଣ କରିଥିଲା ଏବଂ ଏହାର ପ୍ରତିବାଦ କରି ବ୍ରିଟେନ ଓ ଫ୍ରାନସ୍ ଇଜିପଟ୍ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ। ବ୍ରିଟିଶ ସରକାରଙ୍କର ଏହି ଯୁଦ୍ଧଖୋର ମନୋବୃତ୍ତିକୁ ଆନ୍ତର୍ଜାତୀୟ ସ୍ତରରେ ଅନେକ ଦେଶ ଖୋଲାଖୋଲି ଭାବରେ ସମାଲୋଚନା କରିଥିଲେ। ଏତଦ୍‌ବ୍ୟତୀତ ବ୍ରିଟେନର ସଂଖ୍ୟାଧିକ ନାଗରିକ ସରକାରଙ୍କର ଏହି ଅପ୍ରୀତିକର କାର୍ଯ୍ୟକଳାପକୁ ନିନ୍ଦା କରି ଶୋଭାଯାତ୍ରା ବାହାର କରିଥିଲେ। ପ୍ରଫେସର ହାଲ୍‌ଡ଼େନ୍ ମଧ୍ୟ ଏହି ନୀତିର ଦୃଢ଼ ସମାଲୋଚନା କରିଥିଲେ।

ବ୍ରିଟେନର ସାମାଜିକ ଓ ରାଜନୈତିକ ପରିସ୍ଥିତି ପ୍ରତି ବୀତସ୍ପୃହ ହୋଇ ପ୍ରଫେସର ହାଲ୍‌ଡ଼େନ୍ ବ୍ରିଟେନ ଛାଡ଼ି ଅନ୍ୟ ଦେଶରେ ବସବାସ କରିବାକୁ ଇଚ୍ଛା କରିଥିଲେ। ତେଣୁ ସୁଏଜ କେନାଲ ଘଟଣାର ବିରୋଧ କରିବା ସହିତ ସେ ବ୍ରିଟେନ ଛାଡ଼ି ଭାରତକୁ ଦେଶାନ୍ତର ହୋଇଯିବା ପାଇଁ ସ୍ଥିର କରିଥିଲେ। ସୌଭାଗ୍ୟକ୍ରମେ ତାଙ୍କର ବନ୍ଧୁ ପ୍ରଫେସର ମହଲନୋବିସ୍ ତାଙ୍କୁ କଲିକତାସ୍ଥିତ ଭାରତୀୟ ପରିସଂଖ୍ୟାନ ସଂସ୍ଥାରେ ପ୍ରଫେସର ଭାବରେ କାର୍ଯ୍ୟକରିବା ପାଇଁ ଅନୁରୋଧ କରିଥିଲେ। ଏତଦ୍‌ବ୍ୟତୀତ ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ପତ୍ନୀ ଗବେଷିକା ଭାବରେ ନିଯୁକ୍ତି ଦେବାପାଇଁ ପ୍ରସ୍ତାବ ଦେଇଥିଲେ। ପ୍ରଫେସର ହାଲ୍‌ଡ଼େନ୍‌ଙ୍କ ପାଇଁ ଏହା ଏକ ସୁବର୍ଣ୍ଣ ସୁଯୋଗ ଥିଲା କହିଲେ ଚଳେ। ସେ ୧୯୫୭ ମସିହାରେ ଲଣ୍ଡନର ୟୁନିଭରସିଟି କଲେଜର ପ୍ରଫେସର ପଦବୀରୁ ଇସ୍ତଫା ପ୍ରଦାନ କରି ଭାରତ ଅଭିମୁଖେ ଯାତ୍ରା କରିଥିଲେ। ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ମାନବିକତାବୋଧ ଓ ବୈଜ୍ଞାନିକ ଗବେଷଣା ସମ୍ପର୍କରେ ବହୁତ

ପୂର୍ବରୁ ଅବଗତ ଥିଲେ । ତେଣୁ ପ୍ରଫେସର ହାଲ୍‌ଡ଼େନ୍ ଭାରତରେ ସ୍ଥାୟୀ ବସତି ସ୍ଥାପନ କରିବାକୁ ଚିନ୍ତା କରୁଛନ୍ତି ବୋଲି ଜାଣିପାରି ଆନନ୍ଦରେ ବିହ୍ୱଳିତ ହୋଇଯାଇଥିଲେ ଏବଂ ତାଙ୍କର ଭାରତ ଆଗମନକୁ ସ୍ୱାଗତ କରିଥିଲେ ।

ପ୍ରଫେସର ହାଲ୍‌ଡ଼େନ୍ ପ୍ରଥମ ବିଶ୍ୱଯୁଦ୍ଧରେ ଜଣେ ବ୍ରିଟିଶ ଅଫିସର ଭାବରେ ସାହସିକତାର ସହ ଯୁଦ୍ଧ କରି ଦୁଇଥର କ୍ଷତ ବିକ୍ଷତ ହୋଇଥିଲେ ଏବଂ ୧୯୧୮ ମସିହାରେ ଭାରତର ସିମଲାଠାରେ ରହି ଆରୋଗ୍ୟ ଲାଭ କରିଥିଲେ । ସେ ଭାରତରେ ପ୍ରାୟ ଏକବର୍ଷ ରହିଥିଲେ ଏବଂ ଭାରତର ବିଭିନ୍ନ ସ୍ଥାନ ପରିଭ୍ରମଣ କରି ଦେଖିବାର ସୁଯୋଗ ଲାଭ କରିଥିଲେ । ଏହି ସ୍ୱଳ୍ପ ରହଣି କାଳ ମଧ୍ୟରେ ସେ ଭାରତର ସଂସ୍କୃତି ଓ ପାରମ୍ପରିକ ଜୀବନଧାରା ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇପଡ଼ିଥିଲେ । ପରାଧୀନ ଭାରତର ଦୁଃଖ ଦୁର୍ଦ୍ଦଶା ସଂପର୍କରେ ମଧ୍ୟ ସେ ଭଲଭାବରେ ଅବଗତ ହୋଇପାରିଥିଲେ । ୧୯୫୨ ମସିହାରେ ଭାରତୀୟ ବିଜ୍ଞାନ କଂଗ୍ରେସ ଆସୋସିଏସନର ନିମନ୍ତ୍ରଣରେ ସେ ଦ୍ୱିତୀୟଥର ପାଇଁ ଭାରତ ପରିଭ୍ରମଣରେ ଆସିଥିଲେ । ବିଜ୍ଞାନ କଂଗ୍ରେସର ଜାତୀୟ ଅଧିବେଶନରେ ସେ ଯୋଗ ଦେଇଥିଲେ ଏବଂ ପରେ ପରେ ଭାରତର ଅନେକ ପ୍ରମୁଖ ବିଶ୍ୱବିଦ୍ୟାଳୟ ଓ ବିଜ୍ଞାନଗାର ବୁଲି ଦେଖିବାର ସୁଯୋଗ ପାଇଥିଲେ । ସେ ବିଭିନ୍ନ ଗବେଷଣାଗାର ଗୁଡ଼ିକର କାର୍ଯ୍ୟକରୁଥିବା ବୈଜ୍ଞାନିକମାନଙ୍କ ସହ ମିଶିବାର ସୁଯୋଗ ପାଇଥିଲେ ଏବଂ କେତେକ ବିଶ୍ୱବିଦ୍ୟାଳୟରେ ବିଜ୍ଞାନ ସଂପର୍କରେ ବକ୍ତୃତା ମଧ୍ୟ ଦେଇଥିଲେ । ପ୍ରଫେସର ହାଲ୍‌ଡ଼େନ୍ ଏହି ସମୟରେ ଭାରତରେ ବିଭିନ୍ନ ପ୍ରକାରର ଲତା, ଗୁଳ୍ମ, ଉଦ୍ଭିଦ ଓ ପ୍ରାଣୀ ଦେଖିଥିଲେ । ଡ଼ାରଉଇନଙ୍କର ବିବର୍ତ୍ତନବାଦ ଓ ବାଇଓମେଟ୍ରି ସମ୍ପର୍କରେ ଗବେଷଣା କରିବା ପାଇଁ ଏସବୁ ଜୀବଜନ୍ତୁ ଓ ଉଦ୍ଭିଦ ବହୁ ପରିମାଣରେ ସହାୟକ ହୋଇପାରିବେ ବୋଲି ତାଙ୍କର ହୃଦବୋଧ ହୋଇଥିଲା । ପରବର୍ତ୍ତୀ କାଳରେ ହାଲଡେନ୍ ମତ ପ୍ରକାଶ କରିଥିଲେ ଯେ ବ୍ରିଟେନର ଗବେଷଣାଗାର ଗୁଡ଼ିକୁ ବିଭିନ୍ନ ସ୍ଥାନରୁ ଗବେଷଣା କରିବା ପାଇଁ ଅଣା ଯାଉଥିବା ଜୀବଜନ୍ତୁଗୁଡ଼ିକୁ କେବଳ ଭାରତର ଗୋଟିଏ ମାତ୍ର ସ୍ଥାନରେ ଜଣେ ପାଇପାରିବ । ତେଣୁ ବିଭିନ୍ନ ଦେଶ ଓ ପ୍ରଦେଶରୁ ଏ ସବୁ ଜୀବଜନ୍ତୁଙ୍କୁ ଆଣିବା ପରିବର୍ତ୍ତେ ବୈଜ୍ଞାନିକମାନେ ଭାରତକୁ ଯାଇ ସେଠାରେ ବିବର୍ତ୍ତନବାଦ ସଂର୍ପକରେ ନୂତନ ଗବେଷଣା କରିବା ଉଚିତ୍ ।



ଭାରତୀୟ ପରିସଂଖ୍ୟାନ ସଂସ୍ଥାର ପ୍ରତିଷ୍ଠାତା

ପ୍ରଫେସର ମହଲନୋବିସ୍



କଳିଙ୍ଗ ପୁରସ୍କାର ବିଜେତା

ବୈଜ୍ଞାନିକ ଜୁଲିଆନ୍ ହକ୍ସଲେ



ପ୍ରଫେସର ହାଲ୍‌ଡେନ୍ ଲନ୍‌ରେ ବସିଛନ୍ତି

ପ୍ରଫେସର ହାଲଡ଼େନ୍‌ଙ୍କର ଭାରତର ପ୍ରାକୃତିକ ସଂପଦ ଓ ଜୀବଜଗତ ସଂପର୍କରେ ଥିବା ଏହି ଧାରଣା ତାଙ୍କୁ ଭାରତ ପ୍ରତି ବିଶେଷ ଭାବରେ ଆକୃଷ୍ଟ କରିଥିଲା । ପୃଥିବୀର ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟ ଓ ଗବେଷଣାଗାର ଗୁଡ଼ିକ ତାଙ୍କର ନିର୍ଦ୍ଦେଶନାରେ କାର୍ଯ୍ୟ କରିବା ପାଇଁ ସମ୍ପୂର୍ଣ୍ଣ ଆଗ୍ରହୀ ଥିଲେ ମଧ୍ୟ ସେ ଭାରତରେ ଗବେଷଣା କାର୍ଯ୍ୟ କରିବା ପାଇଁ ପସନ୍ଦ କରିଥିଲେ । ସେ ଭାରତରେ ଗବେଷଣା କରିବା ପାଇଁ ଠିକ୍ କରିସାରିଲା ପରେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଇସ୍ତଫା ପତ୍ର ପ୍ରଦାନ କରିବା ସହିତ ବ୍ରିଟିଶ ନାଗରିକତ୍ୱ ମଧ୍ୟ ତ୍ୟାଗ କରି ଦେଇଥିଲେ । ସେ ପତ୍ନୀ ହେଲେନ୍‌ଙ୍କ ସହ ୧୯୫୭ ମସିହା ଜୁଲାଇ ମାସରେ ଭାରତକୁ ଆସିଥିଲେ ଏବଂ ୧୯୬୧ ମସିହାରେ ଭାରତର ସ୍ଥାୟୀ ନାଗରିକତ୍ୱ ଗ୍ରହଣ କରିଥିଲେ । ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ବ୍ରିଟିଶ୍ ତ୍ୟାଗ କରିବା ଘଟଣା ସେ ସମୟରେ ସମଗ୍ର ବିଶ୍ୱରେ ଏକ କୌତୂହଳମୟ ଘଟଣା ହୋଇଉଠିଥିଲା । ଏହି ଘଟଣା ପୃଥିବୀର ସମସ୍ତ ପ୍ରମୁଖ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । ପ୍ରଫେସର ହାଲଡ଼େନ୍‌ଙ୍କର ସହକର୍ମୀମାନେ ତାଙ୍କର ବ୍ରିଟିଶ ନାଗରିକତ୍ୱ ତ୍ୟାଗକୁ ସହଜ ଭାବରେ ଗ୍ରହଣ କରି ପାରିନଥିଲେ । ସେମାନେ ଅତ୍ୟନ୍ତ ଦୁଃଖ ପ୍ରକାଶ କରି ମତ ଦେଇଥିଲେ ଯେ ପ୍ରଫେସର ହାଲଡ଼େନ୍‌ଙ୍କର ଦେଶାନ୍ତର ଯୋଗୁଁ ସେମାନେ ସବୁଦିନ ପାଇଁ ଜଣେ ପ୍ରସିଦ୍ଧ ବୈଜ୍ଞାନିକଙ୍କର ସାନ୍ନିଧ୍ୟ, ସମୟୋଚିତ ପରାମର୍ଶ ଓ ପ୍ରେରଣାରୁ ବଞ୍ଚିତ ହୋଇଥିଲେ ଏବଂ ଏହା ବ୍ରିଟେନର ବିଜ୍ଞାନ ଜଗତ ପାଇଁ ଏକ ଅପୂରଣୀୟ କ୍ଷତି ଥିଲା । କିନ୍ତୁ ପ୍ରଫେସର ହାଲ୍‌ଡ଼େନଙ୍କର ସମାଲୋଚକମାନେ ହାଲ୍‌ଡ଼େନଙ୍କର ଦେଶାନ୍ତରକୁ ଏକ ଭୁଲ ନିଷ୍ପତ୍ତି ଥିଲା ବୋଲି ବିଚାର କରି ହାଲ୍‌ଡ଼େନଙ୍କୁ ସମାଲୋଚନା ଜନିତ ମନ୍ତବ୍ୟ ପ୍ରକାଶ କରିଥିଲେ । ମାତ୍ର ପ୍ରଫେସର ହାଲ୍‌ଡ଼େନ୍ ତାଙ୍କର ସମାଲୋଚକମାନଙ୍କର ସମାଲୋଚନାରେ ଆଦୌ ବିଚଳିତ ନହୋଇ ଭାରତରେ ତାଙ୍କର ଗବେଷଣା କାର୍ଯ୍ୟ ଆରମ୍ଭ କରିଦେଇଥିଲେ । ପରବର୍ତ୍ତୀକାଳରେ ତାଙ୍କର ବନ୍ଧୁ ଓ କଳିଙ୍ଗ ପୁରସ୍କାର ବିଜେତା ବୈଜ୍ଞାନିକ ଜୁଲିଆନ ହକ୍ସଲେ ତାଙ୍କର କଲିକତା ଗସ୍ତ ବେଳେ ପ୍ରଫେସର ହାଲ୍‌ଡ଼େନଙ୍କ ସହ ସାକ୍ଷାତ କରି ଆଳାପ ଆଲୋଚନା କରିଥିଲେ । ସେ ତାଙ୍କର ମାଆଙ୍କୁ ହାଲ୍‌ଡ଼େନଙ୍କର କଣ ସମ୍ବାଦ ଦେବେ ବୋଲି ପ୍ରଶ୍ନ କରିବାରୁ ହାଲ୍‌ଡ଼େନ୍ କହିଥିଲେ, " ମୋ ମା'ଙ୍କୁ କହିବ, ଅବଶେଷରେ ସରକାରୀ ନାଲିଫିତା ଦ୍ୱାରା ବାଧାପ୍ରାପ୍ତ ନହୋଇ ମୁଁ କିଛି ତାତ୍ପର୍ଯ୍ୟପୂର୍ଣ୍ଣ ବୈଜ୍ଞାନିକ ଗବେଷଣା କରିବାକୁ ସମର୍ଥ ହେଲି ।"

ପ୍ରଫେସର ହାଲ୍‌ଡ଼େନ୍ ଲଣ୍ଡନ ବିଶ୍ୱବିଦ୍ୟାଳୟ ଛାଡ଼ିବାପରେ କଲିକତା ସ୍ଥିତ ଭାରତୀୟ ପରସଂଖ୍ୟାନ ସଂସ୍ଥାରେ ପ୍ରଫେସର ଭାବରେ ଯୋଗ ଦେଇଥିଲେ। ଏହି ସଂସ୍ଥାର ପ୍ରତିଷ୍ଠାତା ପ୍ରଫେସର ମହଲନୋବିସ ପରିସଂଖ୍ୟାନ ବିଜ୍ଞାନର ଜଣେ ପ୍ରସିଦ୍ଧ ବ୍ୟକ୍ତିତ୍ୱ ଥିଲେ। ନିଜର ସୁଖ୍ୟାତି ଯୋଗୁଁ ପୂର୍ବରୁ ସେ ପ୍ରଧାନମନ୍ତ୍ରୀ ନେହେରୁଙ୍କର ପରିସଂଖ୍ୟାନ ଉପଦେଷ୍ଟା ଓ ଯୋଜନା କମିଶନର ସଦସ୍ୟ ଭାବରେ ନିଯୁକ୍ତି ପାଇ ପାରିଥିଲେ। ଏତଦ୍‌ବ୍ୟତୀତ ତାଙ୍କର ପରିସଂଖ୍ୟାନ ଶାସ୍ତ୍ରରେ ବିଦ୍‌ବତ୍ତା ଲାଗି ସେ ୧୯୪୫ ମସିହାରେ ଲଣ୍ଡନର ରୟାଲ ସୋସାଇଟର୍ର ଫେଲୋ ଭାବରେ ନିର୍ବାଚିତ ହୋଇଥିଲେ ଏବଂ ଭାରତୀୟ ବିଜ୍ଞାନ କଂଗ୍ରେସର ସଭାପତି ଭାବରେ ୧୯୫୦ ମସିହାରେ କାର୍ଯ୍ୟଭାର ଗ୍ରହଣ କରିଥିଲେ। ସେ ଜଣେ ଦକ୍ଷ ପ୍ରଶାସନିକ କାର୍ଯ୍ୟକର୍ତ୍ତାଭାବରେ ମଧ୍ୟ ସୁନାମ ଅର୍ଜନ କରିପାରିଥିଲେ। ପ୍ରଧାନମନ୍ତ୍ରୀ ନେହେରୁଙ୍କର ପରାମର୍ଶକ୍ରମେ ସେ କଲିକତାସ୍ଥିତ ଭାରତୀୟ ପରିସଂଖ୍ୟାନ ସଂସ୍ଥାର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ ଏବଂ ଏହାକୁ ଏକ ବିଶ୍ୱ ବିଖ୍ୟାତ ଗବେଷଣାଗାର ଭାବରେ ଗଢ଼ି ତୋଳିଥିଲେ। ଏହି ଅନୁଷ୍ଠାନକୁ ବିଶ୍ୱର ବିଭିନ୍ନ ଦେଶରୁ ଛାତ୍ର ଓ ଗବେଷକମାନେ ଆସି ପରିସଂଖ୍ୟାନ ଶାସ୍ତ୍ର ସମ୍ବନ୍ଧୀୟ ଗବେଷଣାମାନ କରୁଥିଲେ। ପ୍ରଫେସର ହାଲ୍‌ଡ଼େନ୍ ତାଙ୍କର ପୂର୍ବବର୍ତ୍ତୀ ଭାରତ ପରିଭ୍ରମଣ କାଳରେ ଏହି ଅନୁଷ୍ଠାନକୁ ଆସିଥିଲେ ଏବଂ ପ୍ରଫେସର ମହଲନୋବିସଙ୍କର କାର୍ଯ୍ୟକୁ ଭୂୟସୀ ପ୍ରଶଂସା କରିଥିଲେ। ତେଣୁ ଲଣ୍ଡନ ବିଶ୍ୱବିଦ୍ୟାଳୟ ପରିତ୍ୟାଗ କରି ଭାରତକୁ ଆସିବାପରେ ଏହି ଅନୁଷ୍ଠାନରେ ଗବେଷଣା କାର୍ଯ୍ୟ ଆରମ୍ଭ କରିବା ପାଇଁ ତାଙ୍କୁ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିନଥିଲା। ସେ ଏହି ଅନୁଷ୍ଠାନର ଦ୍ୱିତୀୟ ମହଲାରେ ନିଜର ବିଜ୍ଞାନଗାର, ଲାଇବ୍ରେରୀ ଓ କାର୍ଯ୍ୟାଳୟ ସ୍ଥାପନା କରି ଗବେଷଣା କାର୍ଯ୍ୟ ଆରମ୍ଭ କରିଥିଲେ।

ଭାରତରେ ପ୍ରଫେସର ହାଲ୍‌ଡ଼େନ୍‌ଙ୍କ ସହ ତାଙ୍କର ପତ୍ନୀ ହେଲେନ୍ ସ୍ପୁରଓୟେ, ଏସ୍.ଡ଼ି.ଜୟକାର, କେ.ଦ୍ରୋଣମରାଜୁ, ଟି.ଏ.ଡ଼ାଭିସ୍, ଏସ୍.କେ. ରାୟ ଗବେଷଣା କାର୍ଯ୍ୟରେ ଯୋଗ ଦେଇଥିଲେ। ଏତଦ୍‌ବ୍ୟତୀତ ସେ କେତେଜଣ ଯୁବ ବୈଜ୍ଞାନିକଙ୍କୁ ମଧ୍ୟ ଗବେଷଣାରେ ସାହାଯ୍ୟ କରିବା ପାଇଁ ନିଯୁକ୍ତି ଦେଇଥିଲେ। ଭାରତରେ ପ୍ରାଣୀ ଓ ଉଦ୍ଭିଦ ବିବର୍ତ୍ତନବାଦ ଓ ଆନୁବଂଶିକୀ ସଂପର୍କରେ ହାଲ୍‌ଡ଼େନ୍ ଅନେକଗୁଡ଼ିଏ ଗବେଷଣା କରିଥିଲେ। ତାଙ୍କର ଏହି ଗବେଷଣାଗୁଡ଼ିକ ଖୁବ୍ ସରଳ ଥିଲା ଏବଂ ଏଥିପାଇଁ ଅତ୍ୟାଧୁନିକ ଯନ୍ତ୍ରପାତିର

ଆବଶ୍ୟକତା ନଥିଲା । ହାଲ୍‌ଡ଼େନ୍ ନିଜେ ଅନେକ ତଥ୍ୟ ସଂଗ୍ରହ କରୁଥିଲେ ଏବଂ ଅନ୍ୟ କେତେକ ତଥ୍ୟ ନିଜର ସହକର୍ମୀମାନଙ୍କ ସାହାଯ୍ୟରେ ସଂଗ୍ରହ କରୁଥିଲେ । ତଥ୍ୟ ଗୁଡ଼ିକୁ ସଂଗ୍ରହ କରି ସାରିଲା ପରେ ସେଗୁଡ଼ିକୁ ସଜାଇ ରଖୁଥିଲେ ଏବଂ ବିଶ୍ଳେଷଣ କରି ଉପାଦେୟ ନିବନ୍ଧ ଲେଖୁଥିଲେ ।

ହାଲ୍‌ଡ଼େନ୍ ଗବେଷଣା ପାଇଁ ଅତ୍ୟାଧୁନିକ ଓ ବହୁମୂଲ୍ୟ ବିଶିଷ୍ଟ ଉପକରଣ ଉପରେ ନିର୍ଭର କରିବାକୁ ପସନ୍ଦ କରୁନଥିଲେ । ଅଳ୍ପ ଖର୍ଚ୍ଚରେ କିଭଳି ଭାବରେ ଉଚ୍ଚମାନର ବୈଜ୍ଞାନିକ ଗବେଷଣା କରାଯାଇପାରିବ ସେ ସଂପର୍କରେ ସେ ଯତ୍ନଶୀଳ ଥିଲେ । କଲିକତାସ୍ଥିତ ଭାରତୀୟ ପରିସଂଖ୍ୟାନ ସଂସ୍ଥାରେ କାର୍ଯ୍ୟ କଲାବେଳେ ହାଲ୍‌ଡ଼େନ୍ ଗବେଷକମାନଙ୍କୁ ପ୍ରଶିକ୍ଷଣ ଦେବା କାର୍ଯ୍ୟ କରୁଥିଲେ । ଏହି ସମୟରେ ଗବେଷକମାନଙ୍କୁ ପ୍ରଶିକ୍ଷଣ ଦେବା ସହିତ ସେମାନେ କିଭଳି ନୂତନ ଗବେଷଣା ପାଇଁ ପ୍ରେରଣା ପାଇ ପାରିବେ ଏବଂ ନୂତନ ଚିନ୍ତାଧାରା ସୃଷ୍ଟି କରି ନିଜେ ଗବେଷଣା କରିବା ପାଇଁ ସକ୍ଷମ ହେବେ ସେଥିପ୍ରତି ବିଶେଷ ଦୃଷ୍ଟି ଦେଉଥିଲେ । ତାଙ୍କ ମତରେ ଗବେଷଣା ପାଇଁ ଗବେଷକର ନିଜସ୍ୱ ଦୃଷ୍ଟିକୋଣ, ଗବେଷଣା କରିବାକୁ ଚାହୁଁଥିବା ବିଷୟ ସମ୍ବନ୍ଧୀୟ ଗଭୀର ଜ୍ଞାନ ଓ ନିଜର ଚତୁର୍ପାର୍ଶ୍ୱରେ ଥିବା ପରିବେଶକୁ ପର୍ଯ୍ୟବେକ୍ଷଣ କରିବାର ଶୈଳୀ ଉପରେ ବୈଜ୍ଞାନିକ ଗବେଷଣାର ଫଳାଫଳ ନିର୍ଭର କରେ । ପ୍ରତ୍ୟେକ ପର୍ଯ୍ୟବେକ୍ଷଣ ପଛରେ କିଛି ନୂତନତ୍ୱ ଲୁଚି ରହିଥାଇପାରେ, ଏକଥା ଗବେଷକ ମନେ ରଖିବା ଉଚିତ୍ ।

ପ୍ରଫେସର ହାଲ୍‌ଡ଼େନ୍ ଭାରତରେ ୧୯୫୭ ମସିହା ଠାରୁ ନିଜର ମୃତ୍ୟୁ (୧୯୬୪) ପର୍ଯ୍ୟନ୍ତ ରହିଥିଲେ । ଏହି ସମୟ ମଧ୍ୟରେ ସେ କଲିକତାସ୍ଥିତ ଭାରତୀୟ ପରିଂସଖ୍ୟାନ ସଂସ୍ଥା, ଭାରତ ସରକାରଙ୍କର କାଉନସିଲ ଅଫ୍ ସାଇଣ୍ଟିଫିକ୍ ଆଣ୍ଡ ଇଣ୍ଡଷ୍ଟ୍ରିଆଲ ରିସର୍ଚ୍ଚ ଏବଂ ଓଡ଼ିଶା ସରକାରଙ୍କର ଜେନେଟିକସ୍ ଆଣ୍ଡ ବାଇଓମେଟ୍ରି ଲାବୋରେଟୋରୀରେ କାର୍ଯ୍ୟ କରିଥିଲେ । ହାଲ୍‌ଡ଼େନ୍‌ଙ୍କର କେତେକ ସମାଲୋଚକ ମତ ଦିଅନ୍ତି ଯେ ଜୀବନର ଶେଷ ଅବସ୍ଥାରେ ହାଲ୍‌ଡ଼େନ୍ ଭାରତରେ ବିଶ୍ରାମ ନେଇଥିଲେ ଏବଂ ବିଜ୍ଞାନ ପାଇଁ ବିଶେଷ କିଛି ନୂତନ ତଥ୍ୟ ଦେଇ ପାରିନଥିଲେ । କିନ୍ତୁ ବିଶିଷ୍ଟ ଜୀବ ବିଜ୍ଞାନବିତ୍ ଡ଼କ୍ଟର ଜୁଲିଆନ୍ ହକ୍ସଲେ ହାଲ୍‌ଡ଼େନ୍‌ଙ୍କର ଭାରତ ରହଣିକାଳ ମଧ୍ୟରେ କରିଥିବା କାର୍ଯ୍ୟ କଳାପ ସଂପର୍କରେ ମତ ଦେବାକୁ ଯାଇ ତାଙ୍କର ଆତ୍ମଜୀବନୀ

ପୁସ୍ତକ "ମେମୋରି–୨"ରେ ଲେଖିଛନ୍ତି ଯେ, "ହାଲ୍‌ଡ଼େନ୍ ଭାରତରେ ଗବେଷଣା କରି କେତେକ ମହତ୍ୱପୂର୍ଣ୍ଣ ବୈଜ୍ଞାନିକ ତଥ୍ୟ ଦେବାକୁ ସମର୍ଥ ହେବା ସହିତ କେତେକ ନୂତନ ଗବେଷଣାର ଆରମ୍ଭ କରିଥିଲେ। ସେ ଜଣେ ଭାରତୀୟ ଭାବରେ ଜୀବନର ଶେଷ ପର୍ଯ୍ୟନ୍ତ ସୁଖ ଓ ଶାନ୍ତିରେ ବସବାସ କରିପାରିଥିଲେ।"

ହାଲ୍‌ଡ଼େନ୍‌ଙ୍କର ଭାରତ ରହଣିକାଳ ମଧ୍ୟରେ ସେ ପୃଥିବୀର ବିଭିନ୍ନ ସ୍ଥାନ ପରିଭ୍ରମଣ କରି ବିଭିନ୍ନ ବିଜ୍ଞାନ ଏକାଡ଼େମୀ ଓ ସୋସାଇଟିମାନଙ୍କରେ ଭାଷଣ ପ୍ରଦାନ କରିଥିଲେ ଏବଂ ଅନେକଗୁଡ଼ିଏ ପୁରସ୍କାର ମଧ୍ୟ ଲାଭ କରିଥିଲେ। ସେ ୧୯୬୧ ମସିହାରେ ଇଟାଲୀର ରୋମ ନଗରୀରେ ଫେଲଟ୍ରିନେଲି ପୁରସ୍କାର ଭାରତୀୟ ପୋଷାକ ପରିଧାନ କରି ଗ୍ରହଣ କରିଥିଲେ ଏବଂ ଭାରତୀୟ ପରମ୍ପରା ପ୍ରତି ତାଙ୍କର ଏହି ଉଦାର ମନୋଭାବ ଓ ସମ୍ମାନ ଯୋଗୁଁ ସେ ସମସ୍ତଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲେ। ଏତଦ୍‌ବ୍ୟତୀତ ସେ ଯୁକ୍ତରାଷ୍ଟ୍ର ଆମେରିକାର ନ୍ୟାସନାଲ ଏକାଡ଼େମୀ ଅଫ ସାଇନସ୍ ଦ୍ୱାରା ପ୍ରଦତ୍ତ କିମ୍ବର ମେଡ଼ାଲ ୧୯୬୧ ମସିହାରେ ଗ୍ରହଣ କରିଥିଲେ ଏବଂ ଏହି ଏକାଡ଼େମୀର ବିଦେଶୀ ସଭ୍ୟଭାବରେ ନିଯୁକ୍ତ ହୋଇଥିଲେ। ୧୯୬୩ ମସିହାରେ ସେ ଯୁକ୍ତରାଷ୍ଟ୍ର ଆମେରିକା ପରିଭ୍ରମଣରେ ଯାଇଥିଲେ ଏବଂ ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରେ ଅଭିଭାଷଣ ଦେଇଥିଲେ। ସେ କର୍କଟ ରୋଗରେ ପୀଡ଼ିତ ହୋଇଛନ୍ତି ବୋଲି ୧୯୬୩ ମସିହାର ଶେଷଭାଗରେ ଜାଣିପାରିଥିଲେ। ମାତ୍ର ଏହି ରୋଗକୁ ସେ ଖାତିର ନକରି ନିଜର କାର୍ଯ୍ୟଗୁଡ଼ିକୁ ଶେଷ କରିବାରେ ଲାଗି ଯାଇଥିଲେ। କର୍କଟ ରୋଗ ତାଙ୍କୁ ଗ୍ରାସ କଲାପରେ ସେ କିପରି ଅନୁଭବ କରିଥିଲେ ସେ ବିଷୟରେ ସେ ଆମେରିକାର ପତ୍ରିକା "ନିଉ ଷ୍ଟେଟସମ୍ୟାନ"ରେ "କ୍ୟାନସର ଇଜ୍ ଏ ଫନି ଥିଙ୍ଗ୍" ଶୀର୍ଷକ କବିତା ଲେଖିଥିଲେ। ସେ ୧୯୬୪ ମସିହା ଡ଼ିସେମ୍ବର ୧ ତାରିଖରେ ଭୁବନେଶ୍ୱରଠାରେ ପ୍ରାଣତ୍ୟାଗ କରିଥିଲେ।

ଭାରତରେ ରହିବା ସମୟ ମଧ୍ୟରେ ପ୍ରଫେସର ହାଲ୍‌ଡ଼େନ୍ ଅତ୍ୟନ୍ତ ଆଗ୍ରହର ସହ ବିଭିନ୍ନ କାର୍ଯ୍ୟ କରିଥିଲେ। ସେ ଇଉନିଭରସିଟି ଗ୍ରାଣ୍ଟସ୍ କମିଶନ ଦ୍ୱାରା ଗଠିତ ଶିକ୍ଷା ସମ୍ବନ୍ଧୀୟ ଏକ କମିଟିର ସଦସ୍ୟ ଥିଲେ। ଏହି କାରଣ ଯୋଗୁଁ ସେ ଭାରତର ବିଶ୍ୱବିଦ୍ୟାଳୟଗୁଡ଼ିକୁ ପରିଭ୍ରମଣ କରି ସେଗୁଡ଼ିକର କାର୍ଯ୍ୟକଳାପ ସଂପର୍କରେ ସମୀକ୍ଷା କରିଥଲେ ଏବଂ ସେଗୁଡ଼ିକରେ

କିଭଳି ଉନ୍ନତ ମାନର ଶିକ୍ଷାଦାନ ଓ ଗବେଷଣା ହୋଇପାରିବ ସେ ସଂପର୍କରେ ନିଜର ସୁଚିନ୍ତିତ ମତାମତ ପ୍ରଦାନ କରିଥିଲେ । ସେ ଜଣେ ବାସ୍ତବବାଦୀ ବୈଜ୍ଞାନିକ ଥିଲେ ଏବଂ ପ୍ରତ୍ୟେକ କାର୍ଯ୍ୟକୁ ଠିକ୍ ସମୟରେ ଓ ତ୍ୱରାନ୍ୱିତ ଭାବରେ କରିବାକୁ ଚାହୁଁ ଥିଲେ । ମାତ୍ର ଦୀର୍ଘ ଦିନର ପରାଧୀନତା ପରେ ଭାରତୀୟ ଅମଲାତନ୍ତ୍ର ସମ୍ପୂର୍ଣ୍ଣ ଜଡ଼ ଅବସ୍ଥାରେ କାର୍ଯ୍ୟ କରୁଥିଲା ଏବଂ ଏଥିପାଇଁ ପ୍ରଫେସର ହାଲ୍‌ଡ୍ରେନ୍ ବହୁତ ସମୟରେ ବଡ଼ ଅସୁବିଧାରେ ପଡୁଥିଲେ । ଏପରିକି କେତେକ ଜରୁରୀ ସମସ୍ୟାର ସମାଧାନ ପାଇଁ ସେ ପ୍ରଧାନମନ୍ତ୍ରୀ ନେହେରୁଙ୍କର ସହାୟତା ନେବାପାଇଁ ବାଧ୍ୟ ହୋଇଥିଲେ । ପଣ୍ଡିତ ନେହେରୁଙ୍କ ସହ ପ୍ରଫେସର ହାଲ୍‌ଡ୍ରେନ୍‌ଙ୍କର ସୁସମ୍ପର୍କ ବହୁତ ଆଗରୁ ରହିଥିଲା ଏବଂ ସେ ତାଙ୍କର ମତାମତକୁ ନିଜର ପୁସ୍ତକ "ଡ଼ିସ୍କଭରି ଅଫ୍ ଇଣ୍ଡିଆ"ରେ ମଧ୍ୟ ପ୍ରକାଶ କରିଛନ୍ତି । ବାସ୍ତବରେ ଭାରତ ପ୍ରଫେସର ହାଲ୍‌ଡ୍ରେନ୍‌ଙ୍କ ଭଳି ଜଣେ ବହୁମୁଖୀ ପ୍ରତିଭା ସମ୍ପନ୍ନ ବୈଜ୍ଞାନିକଙ୍କୁ ନାଗରିକ ହିସାବରେ ଗ୍ରହଣ କରି ନିଜକୁ ଧନ୍ୟ ମନେକରିଛି ।



୮

# ଓଡ଼ିଶାରେ ହାଲ୍‌ଡ଼େନ୍

ପ୍ରଫେସର ହାଲ୍‌ଡ଼େନ୍ ତାଙ୍କର କର୍ମମୟ ଜୀବନର ଶେଷଭାଗଟି ମନ୍ଦିରମାଳିନୀ ନଗରୀ ଭୁବନେଶ୍ୱରର ମନୋମୁଗ୍ଧକର ଓ ଶାନ୍ତ ପରିବେଶ ମଧ୍ୟରେ କଟାଇଥିଲେ। କଲିକତାସ୍ଥିତ ଭାରତୀୟ ପରସଂଖ୍ୟାନ ସଂସ୍ଥାରେ କିଛି ବର୍ଷ ବୈଜ୍ଞାନିକ ଗବେଷଣା କଲାପରେ ପ୍ରଫେସର ହାଲ୍‌ଡ଼େନ୍ ଅନୁଭବ କଲେ ଯେ ଉକ୍ତ ସଂସ୍ଥାର ଅମଲାତନ୍ତ୍ର ତାଙ୍କର ଗବେଷଣା କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ଆବଶ୍ୟକୀୟ ସୁବିଧା ସୁଯୋଗ ଯୋଗାଇଦେବା ପରିବର୍ତ୍ତେ ପ୍ରତିବନ୍ଧକ ରୂପେ କାର୍ଯ୍ୟ କରୁଛି। ପ୍ରଫେସର ମହଲନୋବିସ ନିଜର କାର୍ଯ୍ୟ ବ୍ୟସ୍ତତା ହେତୁ ହାଲ୍‌ଡ଼େନ୍‌ଙ୍କର ଗବେଷଣା ପଥରେ ଉପୁଜୁଥିବା ଅସୁବିଧା ଦୂରକରିବା ପାଇଁ ସମୟପଯୋଗୀ ପଦକ୍ଷେପ ନେଇପାରୁନଥିଲେ। ପରିସଂଖ୍ୟାନ ସଂସ୍ଥାର କେତେକ ନ୍ୟସ୍ତସ୍ୱାର୍ଥ କର୍ମଚାରୀ ଏହାର ସୁଯୋଗ ନେଇ ପ୍ରଫେସର ହାଲ୍‌ଡ଼େନ୍ ଓ ପ୍ରଫେସର ମହଲନୋବିସଙ୍କ ମଧ୍ୟରେ ମନାନ୍ତର ସୃଷ୍ଟି କରିବାକୁ ସକ୍ଷମ ହୋଇ ପାରିଥିଲେ। ତେଣୁ ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ଏହି ସଂସ୍ଥା ପ୍ରତି ବିତୃଷ୍ଣା ଭାବ ଜାତ ହୋଇଥିଲା ଏବଂ ସେ ଭାରତ ସରକାରଙ୍କର କାଉନସିଲ୍ ଅଫ୍ ସାଇଣ୍ଟିଫିକ୍ ଆଣ୍ଡ୍ ଇଣ୍ଡଷ୍ଟ୍ରିଆଲ୍ ରିସର୍ଚ୍ଚରେ ଯୋଗଦେଇଥିଲେ। କିନ୍ତୁ ଏହି ସଂସ୍ଥାରେ ଅନୁକୂଳ ପରିବେଶ ନଥିବା ଯୋଗୁଁ ନିର୍ବିଘ୍ନରେ ନିଜର ଗବେଷଣା କରି ପାରିନଥିଲେ। ଏଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ କଳିଙ୍ଗ ପୁରସ୍କାର ବିଜେତା ଡ଼କ୍ଟର ରିଚି-କାଲଡ଼ର ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ସହ ତାଙ୍କର ପରିଚୟ କରାଇ ଦେଇଥିଲେ ଏବଂ ଶ୍ରୀଯୁକ୍ତ ପଟ୍ଟନାୟକ ତାଙ୍କର ବୈଜ୍ଞାନିକ କାର୍ଯ୍ୟକଳାପରେ ମୁଗ୍ଧହୋଇ ତାଙ୍କୁ ଓଡ଼ିଶାରେ ଏକ ଜେନେଟିକ୍‌ସ ଓ ବାଇଓମେଟ୍ରି ଲାବୋରେଟୋରୀ ପ୍ରତିଷ୍ଠା କରିବାପାଇଁ ଆମନ୍ତ୍ରଣ କରିଥିଲେ। ଏହି ପ୍ରସ୍ତାବକୁ ପ୍ରଫେସର ହାଲ୍‌ଡ଼େନ୍ ଅତ୍ୟନ୍ତ୍ ଆନନ୍ଦର ସହ ଗ୍ରହଣ କରିଥିଲେ।

ଓଡ଼ିଶାରେ ପଦାର୍ପଣ କଲାପରେ ପ୍ରଫେସର ହାଲ୍‌ଡ଼େନ୍ ଭୁବନେଶ୍ୱର ସ୍ଥିତ କୃଷି ମହାବିଦ୍ୟାଳୟ ପରିସର ମଧ୍ୟରେ ତାଙ୍କର ଗବେଷଣା କାର୍ଯ୍ୟ ଆରମ୍ଭ କରିଥିଲେ। ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ପଟ୍ଟନାୟକ ପ୍ରଫେସର୍ ହାଲ୍‌ଡ଼େନ୍‌ଙ୍କର

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ



କୃଷି ମହାବିଦ୍ୟାଳୟ, ଭୁବନେଶ୍ୱର

ସମସ୍ତ ବୈଜ୍ଞାନିକ କାର୍ଯ୍ୟକଳାପ ଯେପରି ନିର୍ବିଘ୍ନରେ ହୋଇପାରିବ ସେଥିପାଇଁ ଉପଯୁକ୍ତ ବ୍ୟବସ୍ଥା କରି ଦେଇଥିଲେ ଏବଂ ଜେନେଟିକସ ଓ ବାଇଓମେଟ୍ରି ଲାବୋରେଟୋରୀ ପାଇଁ ଏକ ସ୍ୱତନ୍ତ୍ର ଗବେଷଣାଗାର ପ୍ରତିଷ୍ଠା କରିବା ପାଇଁ ସ୍ଥିର କରି କାର୍ଯ୍ୟକ୍ରମ ଆରମ୍ଭ କରି ଦେଇଥିଲେ। ମାତ୍ର ୧୯୬୨ ମସିହାରେ ଚୀନ ଭାରତ ଉପରେ ଆକସ୍ମିକ ଆକ୍ରମଣ କରିବା ଫଳରେ ଭୟଙ୍କର ଯୁଦ୍ଧର ସୂତ୍ରପାତ ହୋଇଥିଲା ଏବଂ ଯୁଦ୍ଧକାଳୀନ ପରିସ୍ଥିତିରେ ସ୍ୱତନ୍ତ୍ର ଗବେଷଣାଗାର ପ୍ରତିଷ୍ଠା କରିବାପାଇଁ ଆବଶ୍ୟକ ହେଉଥିବା ଆର୍ଥିକ ସମ୍ବଳ ଓଡ଼ିଶା ସରକାର ଯୋଗାଡ଼ କରିବାକୁ ଅକ୍ଷମ ହୋଇ ପଡ଼ିଥିଲେ। ଶ୍ରୀଯୁକ୍ତ ପଟ୍ଟନାୟକ ପ୍ରଫେସର ହାଲ୍‌ଡ଼େନ୍‌ଙ୍କୁ ନିଜେ ଏହି ଖବର ଜଣାଇଥଲେ ଏବଂ ତାଙ୍କ ଗବେଷଣା ପାଇଁ ଯେପରି କୌଣସି ବ୍ୟବସ୍ଥାରେ ତ୍ରୁଟି ନରହିବ ତାର ବ୍ୟବସ୍ଥା କରିବା ପାଇଁ ପ୍ରତିଶ୍ରୁତି ଦେଇଥିଲେ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଆନ୍ତର୍ଜାତୀୟ ସ୍ତରରେ ଯେ କେବଳ ଜଣେ ଦୁଃସାହସିକ ବିମାନଚାଳକ ଭାବରେ ପରିଚିତ ତା ନୁହେଁ, ସେ ଜଣେ ବିଜ୍ଞାନ ପ୍ରେମୀ ବିଜ୍ଞ ରାଜନୀତିକ ଭାବରେ ମଧ୍ୟ ସୁଖ୍ୟାତି ଅର୍ଜନ କରିଛନ୍ତି। ପ୍ୟାରିସ ସ୍ଥିତ ମିଳିତ ଜାତିସଂଘର ଶିକ୍ଷା, ବିଜ୍ଞାନ ଓ ସାଂସ୍କୃତିକ ସଂସ୍ଥା ଦ୍ୱାରା ବିଜ୍ଞାନର ଅଗ୍ରଗତି ଓ ପ୍ରସାର ଦିଗରେ ମହନୀୟ ଅବଦାନ ପାଇଁ ଦିଆଯାଉଥିବା କଳିଙ୍ଗ ପୁରସ୍କାରର ସେ ପ୍ରତିଷ୍ଠାତା ଅଟନ୍ତି। କଳିଙ୍ଗ ପୁରସ୍କାର ପ୍ରତିଷ୍ଠା କରିବା ବେଳେ ଶ୍ରୀଯୁକ୍ତ ପଟ୍ଟନାୟକ ଲେଖିଥିଲେ "ବୈଜ୍ଞାନିକ ଗବେଷଣାର କୌଶଳ, ଅଗ୍ରଗତି ଓ ଆମର ଦୈନନ୍ଦିନ ଜୀବନ ଉପରେ ତାର ପ୍ରଭାବ ସଂପର୍କରେ ପୃଥିବୀର ଜନସମୁଦାୟକୁ ସଚେତନ କରିବାର ନିତାନ୍ତ ଆବଶ୍ୟକତା ରହିଛି ବୋଲି ମୋର ହୃଦବୋଧ ହୋଇଛି। ବୈଜ୍ଞାନିକ ପ୍ରଗତି ସଂପର୍କରେ ସବିଶେଷ ଧାରଣା ସୃଷ୍ଟି ନକରି ପୃଥିବୀବାସୀଙ୍କର ଜୀବନ ଧାରଣର ମାନ ବୃଦ୍ଧି କରାଯାଇ ପାରିବ, ଏକଥା କୌଣସି ବୁଦ୍ଧିମାନ ବ୍ୟକ୍ତି କହିଲେ ଶୋଭା ପାଇବ ନାହିଁ। ଏକଥା ସତ୍ୟ ଯେ କେବଳ ବୈଜ୍ଞାନିକ ଜ୍ଞାନର ପ୍ରସାର ଦ୍ୱାରା ପୃଥିବୀର ଅଧିକାଂଶ ଜନସମୁଦାୟଙ୍କର ଜୀବନଧାରଣର ମାନ ଅଧିକତର ଭାବେ ବୃଦ୍ଧି କରିବା ସମ୍ଭବ ହୋଇପାରିବ।"

ବିଜ୍ଞାନ ଉପରେ ଦୃଢ଼ ବିଶ୍ୱାସ କରୁଥିବା ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ପଟ୍ଟନାୟକ, ଓଡ଼ିଶାର ପୁରପଲ୍ଲୀରେ ବୈଜ୍ଞାନିକ ଚିନ୍ତାଧାରାର ପ୍ରସାର କରି କୁସଂସ୍କାର

ଓ ଅନ୍ଧବିଶ୍ୱାସକୁ ଦୂର କରିବା ସଙ୍ଗେ ସଙ୍ଗେ ନବ ଯୁବକମାନଙ୍କୁ ବୈଜ୍ଞାନିକ ଗବେଷଣା ପ୍ରତି କିପରି ଭାବରେ ଆକୃଷ୍ଟ କରାଯାଇପାରିବ ସେଥିପ୍ରତି ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ। ତାଙ୍କର ଏହି ମହନୀୟ ଉଦ୍ଦେଶ୍ୟକୁ ସାର୍ଥକ ରୂପାୟନ କରିବା ପାଇଁ ପ୍ରଫେସର ହାଲ୍‌ଡ଼େନ୍‌ଙ୍କ ଭଳି ଜଣେ ବହୁମୁଖୀ ପ୍ରତିଭାବାନ ବୈଜ୍ଞାନିକଙ୍କୁ ପାଇ ସେ ଅତ୍ୟନ୍ତ ଆନନ୍ଦିତ ହୋଇଯାଇଥିଲେ। ମାତ୍ର ଓଡ଼ିଶାରେ ପଦାର୍ପଣ କଲାବେଳକୁ ପ୍ରଫେସର ହାଲ୍‌ଡ଼େନ୍ ତାଙ୍କ ଜୀବନର ସାୟାହ୍ନରେ ପହଞ୍ଚି ସାରିଥିଲେ। ତଥାପି ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ସହ ଆଲୋଚନା କରି ଓଡ଼ିଶାରେ ଅନେକଗୁଡ଼ିଏ ନୂତନ ବୈଜ୍ଞାନିକ ଗବେଷଣା ଆରମ୍ଭକରି ବିଜ୍ଞାନ ଜଗତକୁ ସେ ବିସ୍ମିତ କରି ଦେଇଥିଲେ।

ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ସୁବ୍ୟବସ୍ଥିତ ବିଜ୍ଞାନାଗାର, ମାନ୍ୟତାପ୍ରାପ୍ତ ପ୍ରଫେସର ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ଗବେଷଣା କରିବାର ସମସ୍ତ ଆବଶ୍ୟକୀୟ ସୁବିଧା ସୁଯୋଗ ଛାଡ଼ି ପ୍ରଫେସର ହାଲ୍‌ଡ଼େନ୍ ଓଡ଼ିଶା ଭଳି ଗୋଟିଏ ଅନୁନ୍ନତ ରାଜ୍ୟରେ ଏକ ନୂତନ ଗବେଷଣାଗାର ସ୍ଥାପନ କରବାକୁ ଚେଷ୍ଟା କରିଥିଲେ। ଓଡ଼ିଶାର ବିଜ୍ଞାନ ଇତିହାସରେ ଏହା ଏକ ଗୌରବମୟ ଅଧ୍ୟାୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। କିନ୍ତୁ ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ଓଡ଼ିଶାରେ ସ୍ଥାୟୀ ବସତି ସ୍ଥାପନ ଓ ନୂତନ ଗବେଷଣାଗାର ପ୍ରତିଷ୍ଠା ଉଦ୍ୟମ ତାଙ୍କର ସମସାମୟିକ ବୈଜ୍ଞାନିକ ମହଲରେ ଏକ ବିସ୍ମୟ ସୃଷ୍ଟି କରିଥିଲା। ତାଙ୍କର ବନ୍ଧୁମାନେ ଏହାକୁ ଏକ "ବୈଜ୍ଞାନିକ ଆତ୍ମହତ୍ୟା" (ସାଇଣ୍ଟିଫିକ ସୁଇସାଇଡ଼୍) ଭାବରେ ଚିତ୍ରିତ କରିଥିଲେ। ମାତ୍ର ପ୍ରଫେସର ହାଲ୍‌ଡ଼େନ୍ ଏହି ସମାଲୋଚକ ମାନଙ୍କ ସହ ଏକମତ ହେବା ପରିବର୍ତ୍ତେ ଯୁକ୍ତି ବାଢ଼ିଥିଲେ ଯେ ସେ ବ୍ରିଟେନ ଅପେକ୍ଷା ଓଡ଼ିଶାରେ ତାଙ୍କର ମନମୁତାବକ ବୈଜ୍ଞାନିକ ଗବେଷଣା ନିର୍ବିଘ୍ନ ଭାବରେ କରିପାରିଥିଲେ। ଓଡ଼ିଶାରେ ସେ ତାଙ୍କର ମୌଳିକ ଚିନ୍ତାଧାରାକୁ ଗବେଷଣା କରିବା ସଙ୍ଗେ ସଙ୍ଗେ ଖୁବ୍ ସହଜରେ ତାର ପ୍ରଚାର କରିପାରିଥିଲେ। ଓଡ଼ିଶାରେ ବୈଜ୍ଞାନିକ ଚିନ୍ତାଧାରାର ବିକାଶ ଆରମ୍ଭ ହେଉଥିବା ଯୋଗୁଁ ସେ ଅନେକ ଉତ୍ସାହୀ ବୈଜ୍ଞାନିକ ଓ ବିଜ୍ଞାନ ଅନୁଷ୍ଠାନକୁ ସହଜରେ ପ୍ରଭାବିତ କରିଥିଲେ। ବ୍ରିଟେନ ଭଳି ଓଡ଼ିଶାରେ କୌଣସି ବୈଜ୍ଞାନିକ ତାଙ୍କର ମୌଳିକ ଚିନ୍ତାଧାରା ଉପରେ ପର୍ଯ୍ୟବସିତ ଗବେଷଣାକୁ ଦୃଢ଼ ସମାଲୋଚନା କରି ବାଧା ପ୍ରଦାନ କରିନଥିଲେ।

ହାଲ୍‌ଡ଼େନ୍ ଓଡ଼ିଶା ଆସିଲା ବେଳକୁ ଜଣେ ବିଶିଷ୍ଟ ବୈଜ୍ଞାନିକ ଭାବରେ ପରିଚିତ ହୋଇ ସାରିଥିଲେ ଏବଂ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ପଟ୍ଟନାୟକଙ୍କର ଆମନ୍ତ୍ରିତ ଅତିଥି ଭାବରେ ଓଡ଼ିଶାକୁ ଆସିଥିଲେ । ଏହି କାରଣ ଯୋଗୁଁ ସେ ବିଶେଷ ଅସୁବିଧାର ସମ୍ମୁଖୀନ ହୋଇ ନଥିଲେ । ତଥାପି ପ୍ରଚଳିତ ଅମଲାତାନ୍ତ୍ରିକ ପଦ୍ଧତି ଯୋଗୁଁ ଅନେକ ସମୟରେ ତାଙ୍କୁ ବିଦେଶରୁ ବୈଜ୍ଞାନିକ ଉପକରଣ ଆମଦାନୀ କରିବାପାଇଁ ଅନେକ ଦିନ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡୁଥିଲା ଏବଂ ଜେନେଟିକସ ଓ ବାଇଓମେଟ୍ରି ଲାବୋରେଟୋରୀ ଗଠନ କରିବା ପାଇଁ ସେ ଯେଉଁ ତ୍ୱରାନ୍ୱିତ ଗତିରେ କାର୍ଯ୍ୟ କରିବାକୁ ଚାହୁଁଥିଲେ ସେତିକି ଗତିରେ କରିପାରୁନଥିଲେ । ମାତ୍ର ପ୍ରଫେସର ହାଲ୍‌ଡ଼େନ୍ ଭାରତରେ ଦୀର୍ଘଦିନ ରହିଲାପରେ ଭାରତୀୟ ଅମଲାତନ୍ତ୍ରର ଗତିବିଧି ଓ କାର୍ଯ୍ୟକଳାପ ସଂପର୍କରେ ସମ୍ପୂର୍ଣ୍ଣଭାବରେ ଅବଗତ ହୋଇ ସାରିଥିଲେ । ସେ ଅନୁଭବ କରିଥିଲେ ଯେ ତାଙ୍କର ସୁପ୍ରତିଷ୍ଠା ଓ ଶ୍ରୀଯୁକ୍ତ ପଟ୍ଟନାୟକଙ୍କର ସହାୟତା ଯୋଗୁଁ ଓଡ଼ିଶାର ଅମଲାତନ୍ତ୍ର ତାଙ୍କ ସହ ବିଶେଷ ଭାବରେ ସହଯୋଗ କରି ତାଙ୍କର କାର୍ଯ୍ୟକଳାପକୁ ତ୍ୱରାନ୍ୱିତ କରି ଦେଉଥିଲା ।

ଓଡ଼ିଶା ମାଟିରେ ପାଦ ଦେଲାପରେ ପ୍ରଫେସର ହାଲ୍‌ଡ଼େନ୍ ନିଜକୁ ଓଡ଼ିଶାବାସୀ ଭାବରେ ଗ୍ରହଣ କରିନେଇଥିଲେ । ଓଡ଼ିଶାର ପୁରପଲ୍ଲୀ, ମନ୍ଦିରମାଳା, ପାହାଡ଼ ପର୍ବତ ଘେରା ସବୁଜ କ୍ଷେତ୍ର, ପଶୁପକ୍ଷୀ, ଶାନ୍ତ ସରଳ ଜନସାଧାରଣ ତାଙ୍କୁ ଆପଣାର ଭଳି ମନେ ହୋଇଥିଲା । ସେ ଜନ୍ମରୁ ଖ୍ରୀଷ୍ଟିୟାନ ଥିଲେ ଓ ମାଛ ମାଂସ ଭୋଜନ କରିବା ସଙ୍ଗେ ସଙ୍ଗେ ସାହେବ ଢ଼ଙ୍ଗରେ କୋଟ, ପ୍ୟାଣ୍ଟ, ଜୋତା ପିନ୍ଧୁଥିଲେ । ମାତ୍ର ଓଡ଼ିଶାରେ ବସବାସ କଲାପରେ ତାଙ୍କ ମଧ୍ୟରେ ଏକ ନୂତନ ଚେତନାର ଜାଗ୍ରତ ହୋଇଥିଲା । ସେ ଆସ୍ତେ ଆସ୍ତେ ମାଛ ମାଂସ ଖାଇବା କମାଇ ଦେଇ ସମ୍ପୂର୍ଣ୍ଣ ଭାବରେ ଶାକାହାରୀ ହୋଇଯାଇଥିଲେ ଏବଂ ଓଡ଼ିଆ ଢ଼ାଞ୍ଚାରେ ଧୋତି ଓ କୁର୍ତ୍ତା ପିନ୍ଧିବା ଅଭ୍ୟାସ କରିଥିଲେ । ଓଡ଼ିଆ ମନ୍ଦିରର ସ୍ଥାପତ୍ୟ ଓ କାରୁକାର୍ଯ୍ୟ, ଧର୍ମ ସଂସ୍କୃତି ତାଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ବିଶେଷ କରି ଭୁବନେଶ୍ୱରର ମନ୍ଦିରମାଳା, ଶ୍ରୀଜଗନ୍ନାଥ ମନ୍ଦିର, କୋଣାର୍କ ମନ୍ଦିର ଦେଖି ସେ ଆମୋଦିତ ହୋଇଯାଇଥିଲେ । ସେ ପ୍ରତ୍ୟେକ ମନ୍ଦିର ଓ ସେଠାରେ ପୂଜା ପାଉଥିବା ଠାକୁରଙ୍କର ନାମ ଜାଣିବାକୁ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରୁଥିଲେ ଏବଂ ହିନ୍ଦୁ ଦେବାଦେବୀ ମାନଙ୍କର ଚିତ୍ର ଦେଖି ସେମାନଙ୍କୁ ଚିହ୍ନିବାରେ ପ୍ରୟାସ କରି ସଫଳକାମ

ହୋଇ ପାରିଥିଲେ। ଓଡ଼ିଶା ତାଙ୍କୁ ଖୁବ୍ ଭଲ ଲାଗିଥିଲା। ବିଶେଷକରି ନୂଆ ହୋଇ ଗଢ଼ି ଉଠିଥିବା ରାଜଧାନୀ ଭୁବନେଶ୍ୱରକୁ ସେ ଅତ୍ୟନ୍ତ ପସନ୍ଦ କରିଥିଲେ ଏବଂ ଏହାକୁ "ପୃଥିବୀର ସ୍ୱର୍ଗ" (ଇୟାର୍ଥଲି ପାରାଡ଼ାଇଜ) ନାମରେ ନାମିତ କରିଥିଲେ।

ଓଡ଼ିଶାର ଜେନେଟିକସ ଓ ବାଇଓମେଟ୍ରି ଲାବୋରେଟୋରୀରେ ହାଲ୍‌ଡ଼େନ୍‌ଙ୍କ ସହ ତାଙ୍କର ପତ୍ନୀ ହେଲେନ, ସହକର୍ମୀ ଏସ୍.ଡ଼ି.ଜୟକାର, କେ.ଦ୍ରୋଣମରାଜୁ ଏବଂ ଏ.କେ.ରାୟ ଯୋଗ ଦେଇଥିଲେ। ଏତଦ୍‌ବ୍ୟତୀତ ହାଲ୍‌ଡ଼େନ୍ କେତେଜଣ ଉତ୍ସାହୀ ଯୁବ ବୈଜ୍ଞାନିକଙ୍କୁ ଗବେଷଣା କାର୍ଯ୍ୟ କରିବା ପାଇଁ ସୁଯୋଗ ଦେଇଥିଲେ। ରାଜ୍ୟ ସରକାରଙ୍କ ତରଫରୁ ତାଙ୍କର ରହିବା ପାଇଁ ରାଜଭବନ ନିକଟରେ ଏକ ସରକାରୀ ବାସଭବନର ବ୍ୟବସ୍ଥା କରାଯାଇଥିଲା। ଏହା ଏକ ବିରାଟ ପ୍ରାସାଦ ଥିଲା ଏବଂ ଏହାର ବଗିଚାରେ ବିଭିନ୍ନ ପ୍ରକାରର ଗଛଲତା ଭରି ରହିଥିଲା। ଏହି ଗଛ ଲତା ଓ ଫୁଲ ପ୍ରତି ଆକୃଷ୍ଟ ହୋଇ ବିଭିନ୍ନ ପ୍ରକାର ଚଢ଼େଇ ଓ ପ୍ରଜାପତି ଆସୁଥିଲେ। ହେଲେନ ଜୀବଜନ୍ତୁମାନଙ୍କର ବିଭିନ୍ନ ପ୍ରକାରର ବ୍ୟବହାର ଓ ସାମାଜିକ ଜୀବନ ସଂପର୍କରେ ଗବେଷଣା କରିବାକୁ ଭଲ ପାଉଥିଲେ। ଏଣୁ ସେ ହାଲ୍‌ଡ଼େନ୍‌ଙ୍କ ସହ ମିଶି ଏହି ଜୀବଜନ୍ତୁଗୁଡ଼ିକୁ ଅନୁଧ୍ୟାନ କରି ବିବର୍ତ୍ତନବାଦ ବିଷୟରେ କେତେକ ନୂତନ ତଥ୍ୟ ପ୍ରଦାନ କରିବାକୁ ସମର୍ଥ ହୋଇ ପାରିଥିଲେ। ପକ୍ଷୀମାନଙ୍କ ଉପରେ ଦୀର୍ଘଦିନ ଧରି ପର୍ଯ୍ୟବେକ୍ଷଣ କରି ସେ ବିବର୍ତ୍ତନବାଦ ଉପରେ ପର୍ଯ୍ୟବସିତ "ଥିଓରି ଅଫ୍ ଲାକ୍ସେସନ" ସିଦ୍ଧାନ୍ତ ପ୍ରଦାନ କରିଥିଲେ।

ଓଡ଼ିଶା ହାଲ୍‌ଡ଼େନ୍‌ଙ୍କର ଦୈନନ୍ଦିନ ଜୀବନ କଠୋର ଅଧ୍ୟବସାୟ ଓ ବୈଜ୍ଞାନିକ ଗବେଷଣାରେ ଅତିବାହିତ ହୋଇଥିଲା। ତାଙ୍କର ବାସଭବନର ପ୍ରତ୍ୟେକ କୋଠରୀରେ ବହି ସବୁ ପଡ଼ି ରହିଥିଲା ଏବଂ ଏହା ଏକ ବିଜ୍ଞାନ ଗବେଷଣାଗାର ଭଳି କାର୍ଯ୍ୟ କରୁଥିଲା। ଓଡ଼ିଶାରେ ଅବସ୍ଥାନ କାଳରେ ହାଲ୍‌ଡ଼େନ୍‌ଙ୍କର ବୈଜ୍ଞାନିକ ଗବେଷଣା ପ୍ରତି ଦୃଷ୍ଟିକୋଣ ପୂର୍ବ ଭଳି ରହିଥିଲା। ସେ ଓଡ଼ିଶାରେ ମାନବୀୟ ଆନୁବଂଶିକୀ, ପପୁଲେସନ ଜେନେଟିକସ, ଜୈବ ବିବର୍ତ୍ତନବାଦ, ପଶୁପକ୍ଷୀ ମାନଙ୍କର ସାମାଜିକ ଜୀବନ, ବାଇଓମେଟ୍ରି ଓ ଟସର ପୋକ ପ୍ରଜନନ କ୍ଷେତ୍ରରେ ବିଶେଷ କରି ବୈଜ୍ଞାନିକ ଗବେଷଣା କରିଥିଲେ। ଏତଦ୍‌ବ୍ୟତୀତ ବାଇଗଣ ଓ ବତକ ପ୍ରଜନନ କ୍ଷେତ୍ରରେ କେତେକ ମୌଳିକ ଗବେଷଣା କରିବା ପାଇଁ ଯୋଜନା କରିଥିଲେ।

ହାଲ୍‌ଡ଼େନ୍ "ଜର୍ଣ୍ଣାଲ ଅଫ୍ ଜେନେଟିକସ୍"ର ସଂପାଦନା କାର୍ଯ୍ୟ ଓଡ଼ିଶାରେ ଚାଲୁ ରଖିଥିଲେ। ଏହି ସମୟରେ ସୁପ୍ରତିଷ୍ଠିତ ବୈଜ୍ଞାନିକମାନଙ୍କ ଦ୍ୱାରା ଲିଖିତ ଅନେକଗୁଡ଼ିଏ ବିଜ୍ଞାନ ପୁସ୍ତକର ସମୀକ୍ଷା କରି ଜର୍ଣ୍ଣାଲ ଅଫ୍ ଜେନେଟିକସ୍ ପତ୍ରିକାରେ ପ୍ରକାଶ କରିଥିଲେ। ଏଗୁଡ଼ିକୁ ଅଧ୍ୟୟନ କଲେ ହାଲ୍‌ଡ଼େନ୍‌ଙ୍କର ଜ୍ଞାନର ଗଭୀରତା ସମ୍ପର୍କରେ ବିଶଦ ଭାବରେ ଜ୍ଞାନ ଲାଭ କରିହୁଏ। ହାଲଡ଼େନ୍‌ଙ୍କର ସହାୟତାରେ ଅନେକଗୁଡ଼ିଏ ବୈଜ୍ଞାନିକ ଗବେଷଣା ପ୍ରକଳ୍ପର କାର୍ଯ୍ୟକଳାପ ସଂପର୍କରେ ସମୀକ୍ଷା କରାଯାଇ ସେଗୁଡ଼ିକ କିଭଳି ଜନହିତକର କାର୍ଯ୍ୟ ପାଇଁ ଗବେଷଣା କରିପାରିବେ ସେ ସଂପର୍କରେ ମଧ୍ୟ ଯୋଜନା ପ୍ରସ୍ତୁତ କରାଯାଇ ପାରିଥିଲା।

ଓଡ଼ିଶା ରହଣିକାଳରେ ହାଲ୍‌ଡ଼େନ୍‌ଙ୍କ ଦ୍ୱାରା ପ୍ରଣୀତ "ମ୍ୟାନ୍ ଆଣ୍ଡ୍ ହିଜ୍ ଫ୍ୟୁଚର୍" (ମଣିଷ ଓ ତାର ଭବିଷ୍ୟତ) ପୁସ୍ତକଟି ପ୍ରକାଶ ପାଇଥିଲା। ଏହି ପୁସ୍ତକରେ ହାଲ୍‌ଡ଼େନ୍ ମଣିଷ ମଧ୍ୟରେ ଘଟୁଥିବା ଜୈବିକ ପରିବର୍ତ୍ତନ କଥା ଉଲ୍ଲେଖ କରବା ସହିତ ଦୁଇ ହଜାର ବର୍ଷ ପରେ ମଣିଷ ଶରୀରରେ କେଉଁ କେଉଁ ଜୈବିକ ପରିବର୍ତ୍ତନ ହେବାର ସମ୍ଭାବନା ରହିଛି ସେ ବିଷୟରେ ଆଲୋକପାତ କରିଥିଲେ।

ହାଲ୍‌ଡ଼େନ୍ ତାଙ୍କର ସହକର୍ମୀ ଜୟକାରଙ୍କର ସହାୟତା ନେଇ ଓଡ଼ିଶା ଏବଂ ତାର ପାର୍ଶ୍ୱବର୍ତ୍ତୀ ରାଜ୍ୟ ଆନ୍ଧ୍ରପ୍ରଦେଶର ଲୋକ ସମ୍ପ୍ରଦାୟ ମଧ୍ୟରେ ଆତ୍ମୀୟ ସ୍ୱଜନ ଓ ପରିବାର ମଧ୍ୟରେ ହେଉଥିବା ଆତ୍ମୀୟ ବିବାହ ଓ ତାର ପ୍ରଭାବ ସଂପର୍କରେ ଅନୁଧ୍ୟାନ କରିଥିଲେ। ଆତ୍ମୀୟ ବିବାହ ପ୍ରଥାକୁ ସେ ନାପସନ୍ଦ କରି ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ବିବାହ କରିବା ସପକ୍ଷରେ ବୈଜ୍ଞାନିକ ତଥ୍ୟ ଉପରେ ପର୍ଯ୍ୟବସିତ ଅନେକଗୁଡ଼ିଏ ଯୁକ୍ତିର ଉପସ୍ଥାପନା କରିଥିଲେ। ଓଡ଼ିଶାର ଆଦିବାସୀ ବହୁଳ ଅଞ୍ଚଳରେ ମେଲେରିଆ ରୋଗର ପ୍ରାର୍ଦ୍ଦୁଭାବ ତାଙ୍କୁ ବିଶେଷ ଭାବରେ ବ୍ୟଥିତ କରିଥିଲା। ଏ ରୋଗର କାରଣ ଓ ପ୍ରତିକାର ସଂପର୍କରେ ଅନୁଧ୍ୟାନ କରିବା ପାଇଁ ସେ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାକୁ ଅନୁରୋଧ କରିଥିଲେ ଏବଂ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାର ଏକ ବିଶେଷଜ୍ଞ ଦଳ ଓଡ଼ିଶା ଆସି ମେଲେରିଆ ରୋଗ ବିଷୟ ଓଡ଼ିଶାର ଆଦିବାସୀ ବହୁଳ ଅଞ୍ଚଳ ଗୁଡ଼ିକରେ ଅନୁଧ୍ୟାନ କରି ବିବରଣୀ ପ୍ରଦାନ କରିଥିଲେ।

ଓଡ଼ିଶାରେ ହାଲ୍‌ଡ଼େନ୍‌ଙ୍କର ବୈଜ୍ଞାନିକ କାର୍ଯ୍ୟକଳାପ ତାଙ୍କର ବିଦେଶଗସ୍ତ ଓ କର୍କଟ ରୋଗ ଯୋଗୁଁ ବାଧାପ୍ରାପ୍ତ ହୋଇଥିଲା । ସେ ୧୯୬୧ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାର ନ୍ୟାସନାଲ ଏକାଡ଼େମୀ ଅଫ୍ ସାଇନସ୍ ଦ୍ୱାରା "କିମ୍ବର ମେଡ଼ାଲ"ରେ ପୁରସ୍କୃତ ହୋଇଥିଲେ ଏବଂ ୧୯୬୪ ମସିହାରେ ଏହି ଏକାଡ଼େମୀର ବିଦେଶୀ ସଦସ୍ୟ ଭାବରେ ନିର୍ବାଚିତ ହୋଇଥିଲେ । ୧୯୬୩ ମସିହାରେ ସେ ଅଳ୍ପଦିନ ପାଇଁ ଯୁକ୍ତରାଷ୍ଟ୍ର ଆମେରିକା ଗସ୍ତରେ ଯାଇଥିଲେ ଏବଂ ସେହି ବର୍ଷର ଶେଷ ଭାଗରେ ତାଙ୍କ ଦେହରେ ପ୍ରଥମ କରି କର୍କଟ ରୋଗର ଲକ୍ଷଣ ପ୍ରକାଶ ପାଇଥିଲା । ମାତ୍ର ସେ ସାଧାରଣ ମଣିଷମାନଙ୍କ ଭଳି ଭୟଭୀତ ହୋଇ ଯାଇନଥିଲେ । କର୍କଟ ରୋଗ ସମ୍ବନ୍ଧରେ ଏକ କବିତା ଲେଖି ଆମେରିକାର ସଂବାଦପତ୍ର ନିଉ ଷ୍ଟେଟସ ମ୍ୟାନରେ ସେ ପ୍ରକାଶ କରିଥିଲେ । ମୃତ୍ୟୁ ପାଖେଇ ଆସୁଥିବା ଜାଣି ସେ ନିଜର ଶେଷ ହେବାକୁ ଥିବା କାର୍ଯ୍ୟ ଗୁଡ଼ିକୁ ସାରିବା ଆରମ୍ଭ କରି ଦେଇଥିଲେ । ଅତି ଆବଶ୍ୟକ ନ ପଡ଼ିଲେ ସାଧାରଣ ଦର୍ଶକ ବା ଅତିଥିମାନଙ୍କ ସହ ମିଳାମିଶା କରିବାକୁ ମନା କରି ଦେଇଥିଲେ । ଅବିଶ୍ରାନ୍ତ ଭାବରେ ସେ ନିଜର କାର୍ଯ୍ୟ ଜୀବନର ଶେଷ ସମୟ ପର୍ଯ୍ୟନ୍ତ କରି ଚାଲିଥିଲେ ଏବଂ ୧୯୬୪ ମସିହା ଡ଼ିସେମ୍ବର ମାସ ୧ ତାରିଖ ଦିନ କର୍ମମୟ ଜୀବନର ଅବସାନ କରି ଇହଲୀଳା ସମ୍ବରଣ କରିଥିଲେ ।



## ୯

# ବୈଜ୍ଞାନିକ ହାଲ୍‌ଡ଼େନ୍

ବିଜ୍ଞାନ ଜଗତରେ ପ୍ରଫେସର ହାଲ୍‌ଡ଼େନ୍ ଜଣେ ଅସାଧାରଣ ପ୍ରତିଭା ସମ୍ପନ୍ନ ବୈଜ୍ଞାନିକ ଭାବରେ ସୁପରିଚିତ। ତାଙ୍କର ପିତା ବୈଜ୍ଞାନିକ ଜନ୍ ସ୍କଟ୍ ହାଲ୍‌ଡ଼େନ୍ ଊନବିଂଶ ଶତାବ୍ଦୀର ଜଣେ ବିଶିଷ୍ଟ ପ୍ରାଣୀ ଶରୀରତତ୍ତ୍ୱବିତ୍ ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜନ୍ ସ୍କଟ୍ ହାଲ୍‌ଡ଼େନ୍ ତାଙ୍କର ପୁତ୍ର ଜ୍ୟାକ୍ ହାଲ୍‌ଡ଼େନ୍‌ଙ୍କୁ ଜଣେ ବୈଜ୍ଞାନିକ ଭାବରେ ଗଢ଼ି ତୋଳିବା ପାଇଁ ଜ୍ୟାକ୍‌ଙ୍କର ବାଲ୍ୟକାଳରୁ ଚେଷ୍ଟା କରିଥିଲେ। ତାଙ୍କର ସୁଚିନ୍ତିତ ଯୋଜନାବଦ୍ଧ ଶିକ୍ଷାଦାନ ଓ ବୈଜ୍ଞାନିକ ଗବେଷଣା ଦିଗରେ ଉପଯୁକ୍ତ ଚିନ୍ତାଧାରା ପାଇଁ ପ୍ରଶିକ୍ଷଣ ଜ୍ୟାକ୍ ହାଲ୍‌ଡ଼େନ୍‌ଙ୍କୁ ଜଣେ ସୁଦକ୍ଷ ବୈଜ୍ଞାନିକ ହେବାପାଇଁ ଯଥେଷ୍ଟ ପ୍ରେରଣା ଯୋଗାଇ ଦେଇଥିଲା । ପ୍ରଫେସର ହାଲ୍‌ଡ଼େନ୍ ଜଣେ ସୁପ୍ରସିଦ୍ଧ ବୈଜ୍ଞାନିକ ଥିଲେ ମାତ୍ର କୌତୂହଳର ବିଷୟ ଏହି ଯେ ସେ ବିଜ୍ଞାନର କୌଣସି ବିଭାଗରେ ସ୍ନାତକ କିମ୍ବା ଡକ୍ଟରେଟ ଉପାଧି ପାରମ୍ପରିକ ଭାବରେ କୌଣସି ବିଶ୍ୱବିଦ୍ୟାଳୟରୁ ଗ୍ରହଣ କରି ନଥିଲେ। ଲଣ୍ଡନର ନିଉ କଲେଜଠାରେ ସେ ପ୍ରଥମେ ଗଣିତ ଶାସ୍ତ୍ରରେ ବୃତ୍ତିପାଇ ଅନର୍ସ ଶ୍ରେଣୀରେ ଅଧ୍ୟୟନ କରୁଥିଲେ। ମାତ୍ର ପରବର୍ତ୍ତୀ କାଳରେ ସେ ଫିଲୋସଫି ଏବଂ ଗ୍ରୀକ୍ ଓ ଲାଟିନ ସାହିତ୍ୟରେ ନିଜର ଏମ୍.ଏ. ଡ଼ିଗ୍ରୀ ଗ୍ରହଣ କରିଥିଲେ। ତେଣୁ ବୈଜ୍ଞାନିକ ଦକ୍ଷତା ସମ୍ବନ୍ଧୀୟ ଜ୍ଞାନ ସେ ନିଜର ପିତାଙ୍କଠାରୁ ବହୁଳ ଭାବରେ ଆହରଣ କରିଥିଲେ ଏବଂ ନିଜେ ନିଜର କର୍ତ୍ତବ୍ୟ ନିଷ୍ଠା ଓ କଠୋର ଅଧ୍ୟବସାୟ ବଳରେ ହାସଲ କରି ପାରିଥିଲେ। ନିଜର ବୈଜ୍ଞାନିକ ପ୍ରତିଭା ପାଇଁ ସେ ତାଙ୍କର ପିତା ଜନ୍ ସ୍କଟ୍ ହାଲଡ଼େନ୍‌ଙ୍କର ଅବଦାନକୁ ମୁକ୍ତ କଣ୍ଠରେ ସ୍ୱୀକାର କରି ସମ୍ମାନ ପ୍ରଦର୍ଶନ କରିଥିଲେ।

ବୈଜ୍ଞାନିକ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ପ୍ରଫେସର ହାଲ୍‌ଡ଼େନ୍ ଏପରି ଜଣେ ଅସାଧାରଣ ବୈଜ୍ଞାନିକ ଯେ ବିଜ୍ଞାନର ଅନେକଗୁଡ଼ିଏ ବିଭାଗକୁ ଏକ ସମୟରେ ପ୍ରଭାବିତ କରିପାରିଥିଲେ। ସେ ଏମ୍.ଏ. ଡ଼ିଗ୍ରୀ ପାଶ୍ କରିଥିଲେ ମଧ୍ୟ ଜୀବ ବିଜ୍ଞାନ ପ୍ରତି ବାଲ୍ୟକାଳରୁ ଆକୃଷ୍ଟ ହୋଇଥିଲେ ଏବଂ ନିଜର ଭଉଣୀଙ୍କ ସହାୟତାରେ ଗିନପିଗମାନଙ୍କୁ ଅଧ୍ୟୟନ କରି "ଲିଙ୍କେଜ"



ପ୍ରଫେସର ହାଲ୍‌ଡେନ୍



ଅନୁବଂଶୀୟ ବିଜ୍ଞାନର ପ୍ରଫେସର୍ ଆର୍: ଏ. ଫିସର୍

ତତ୍ତ୍ୱ ଦେଇପାରିଥିଲେ। ପ୍ରଫେସର ଗୁଡ୍‌ରିକ୍‌ଙ୍କର ଶ୍ରେଣୀରେ ଅଧ୍ୟୟନ କଲା ପରେ ସେ ଜୈବ ବିବର୍ତ୍ତନ ବାଦ ପ୍ରତି ଆକୃଷ୍ଟ ହୋଇପଡ଼ିଥିଲେ। ପରିଶେଷରେ ସେ ଆନୁବଂଶିକୀ ଓ ବିବର୍ତ୍ତନବାଦ ଉଭୟର ସମ୍ମିଶ୍ରଣ କରି ନିଜର ଗବେଷଣାତ୍ମକ ଚିନ୍ତାଧାରାକୁ ପ୍ରତିଫଳିତ କରିଥିଲେ। ହାଲ୍‌ଡ଼େନ୍ ନିଜର ଗବେଷଣାକୁ କେବଳ ଆନୁବଂଶିକୀ ଓ ବିବର୍ତ୍ତନବାଦ ଭିତରେ ସୀମିତ ରଖି ନଥିଲେ। ଏହା ସହିତ ସେ ଜୀବବିଜ୍ଞାନ, ଗଣିତ ଶାସ୍ତ୍ର, ଶରୀରତତ୍ତ୍ୱ, ଜୈବରସାୟନ, ପରିସଂଖ୍ୟାନ ଶାସ୍ତ୍ର ଇତ୍ୟାଦିରେ ମଧ୍ୟ ଉଚ୍ଚକୋଟୀର ଗବେଷଣା କରିପାରିଥିଲେ। ତାଙ୍କର ଗବେଷଣାତ୍ମକ ଚିନ୍ତାଧାରା ଦ୍ୱାରା ଅନେକ ବୈଜ୍ଞାନିକ ପ୍ରଭାବିତ ହୋଇପାରିଥିଲେ ଏବଂ ଜୀବ ବିଜ୍ଞାନରେ କେତେଗୁଡ଼ିଏ ନୂତନ ବିଭାଗର ସୃଷ୍ଟି ହୋଇଥିଲା।

ହାଲ୍‌ଡ଼େନ୍ ୧୯୩୨ ମସିହା ପର୍ଯ୍ୟନ୍ତ ଜୈବରସାୟନବିତ୍ ଅଧ୍ୟାପକ ଭାବରେ ନୋବେଲ ପୁରସ୍କାର ବିଜେତା ବୈଜ୍ଞାନିକ ଗୋଲ୍ୟାଣ୍ଡ ହପକିନସ୍‌ଙ୍କ ଅଧୀନରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କରିଥିଲେ। ହପକିନସ୍ ରସାୟନବିତ୍ ହିସାବରେ ଅନେକ ବୈଜ୍ଞାନିକଙ୍କୁ ପ୍ରଶିକ୍ଷଣ ଦେବା ସଙ୍ଗେ ସଙ୍ଗେ ରସାୟନ ଶାସ୍ତ୍ରରେ ନୂତନ ଦିଗନ୍ତର ସୃଷ୍ଟି କରିଥିଲେ। ହାଲ୍‌ଡ଼େନ୍ ଜଣେ ସୃଜନଶୀଳ ବ୍ୟକ୍ତି ଥିଲେ। ସେ ୧୯୩୦ ମସିହାରେ ରସାୟନ ଶାସ୍ତ୍ର ଉପରେ ଭିତ୍ତିକରି "ଏନଜାଇମ୍‌ସ" ନାମକ ଏକ ପୁସ୍ତକ ରଚନା କରିଥିଲେ। ତାଙ୍କର ଏହି ପୁସ୍ତକଟି ତତ୍‌କାଳୀନ ରସାୟନ ଶାସ୍ତ୍ର ପାଇଁ ଏକ ମାଇଲ ଖୁଣ୍ଟ ଭଳି କାର୍ଯ୍ୟ କରିଥିଲା ଏବଂ ଗବେଷକ ମାନେ ବିଭିନ୍ନ ଏନଜାଇମ୍ କିଭଳି ଭାବରେ କାର୍ଯ୍ୟ କରେ ସେ ସଂପର୍କରେ ସମ୍ପୂର୍ଣ୍ଣଭାବରେ ଅବଗତ ହୋଇପାରିଥିଲେ। ହାଲ୍‌ଡ଼େନ୍ ଅନ୍ୟ ବୈଜ୍ଞାନିକମାନଙ୍କ ଭଳି ବହିଟିଏ ଲେଖିଦେଇ ନୀରବ ହୋଇଯାଇ ନଥିଲେ ବରଂ ଆନୁବଂଶିକୀ ସମ୍ବନ୍ଧୀୟ ଗବେଷଣାରେ ଜୈବରସାୟନ ଶାସ୍ତ୍ରର କିଭଳି ପ୍ରୟୋଗ ହୋଇ ପାରିବ ସେ ବିଷୟରେ ଗଭୀର ଭାବରେ ଅନୁଶୀଳନ କରିଥିଲେ। ସେ ଫୁଲର ରଙ୍ଗ ବିଷୟ ଉପରେ ଗବେଷଣା ଆରମ୍ଭ କରି ଜୈବରସାୟନ ଓ ଆନୁବଂଶିକୀ ତଥ୍ୟଗୁଡ଼ିକର ଏକ ସମୟରେ କିଭଳି ପ୍ରୟୋଗ ହୋଇପାରିବ ସେହିକଥା ବୈଜ୍ଞାନିକମାନଙ୍କ ଦୃଷ୍ଟିକୁ ଆଣିବାକୁ ସକ୍ଷମ ହୋଇପାରିଥିଲେ ଏବଂ ପରବର୍ତ୍ତୀକାଳରେ ଏହି ଦୁଇ ଶାସ୍ତ୍ରର ସମ୍ମିଶ୍ରଣ କରି ଏକ ନୂତନ ଗବେଷଣାତ୍ମକ ଶାସ୍ତ୍ର "ବାଇଓ କେମିକାଲ ଜେନେଟିକସ୍"ର ପ୍ରାରମ୍ଭ ହୋଇଥିଲା।

ପ୍ରଫେସର ହାଲ୍‌ଡ଼େନ୍ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ତ୍ୟାଗ କଲାପରେ ୱେଲଡ଼ନ୍ ପ୍ରଫେସର ଅଫ୍ ବାଇଓମେଟ୍ରି ପଦରେ କାର୍ଯ୍ୟ ଭାର ତୁଲାଇଥିଲେ। ତାଙ୍କର ପୁସ୍ତକ "ଦି କଜେସ୍ ଅଫ୍ ଇଭଲ୍ୟୁସନ" (ବିବର୍ତ୍ତନବାଦର କାରଣ) ସେ ସମୟର ବୈଜ୍ଞାନିକ ମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା। ତାଙ୍କ ପୂର୍ବରୁ ପ୍ରଫେସର ଆର୍.ଏ.ଫିସର୍ "ଥିଓରିଜ ଅଫ୍ ନାଚୁରାଲ୍ ସିଲେକସନ୍" ପୁସ୍ତକ ରଚନା କରିଥିଲେ ଏବଂ ପ୍ରଫେସର ସେୱାଲରାଇଟଲ ମଧ୍ୟ ଏ ବିଷୟରେ ଗବେଷଣା କରୁଥିଲେ। ଏହି ତିନିଜଣ ବିଶିଷ୍ଟ ବୈଜ୍ଞାନିକ ସ୍ୱତନ୍ତ୍ର ଭାବରେ ଗବେଷଣା କରୁଥିଲେ। ମାତ୍ର ସେମାନଙ୍କର ଉଦ୍ୟମ ଫଳରେ "ପପୁଲେସନ ଜେନେଟିକସ୍" ନାମରେ ଏକ ନୂତନ ଗବେଷଣାତ୍ମକ ବିଭାଗର ସୃଷ୍ଟି ହୋଇଥିଲା।

" ହାଲ୍‌ଡ଼େନ୍‌ଙ୍କର ବହୁମୁଖୀ ଚିନ୍ତାଧାରା ତାଙ୍କ ବୈଜ୍ଞାନିକ ଜୀବନର ଏକ ବୈଶିଷ୍ଟ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ବିଜ୍ଞାନକୁ କେବଳ ଗବେଷଣା ଭିତରେ ସୀମିତ ରଖିବାକୁ ଚେଷ୍ଟା ନକରି ତାହା କିପରି ମାନବ କଲ୍ୟାଣ ପାଇଁ ଉପଯୋଗୀ ହୋଇପାରିବ ସେଥିପ୍ରତି ବିଶେଷ ନଜର ଦେଉଥିଲେ। ତେଣୁ ସେ ମାନବ ସମାଜରେ ଶାରୀରିକ ଓ ମାନସିକ ସ୍ତରରେ କି ପ୍ରକାର ପରିବର୍ତ୍ତନ ଘଟୁଛି ସେ ବିଷୟରେ ଗବେଷଣା ଆରମ୍ଭ କରିଥିଲେ। ମଣିଷର ବିଭିନ୍ନ ଚରିତ୍ର କିଭଳି ଭାବରେ ବଂଶାନୁକ୍ରମେ ପିତାମାତାଙ୍କଠାରୁ ପୁତ୍ର କନ୍ୟାମାନଙ୍କ ପାଖକୁ ଉତ୍ତରାଧିକାର କ୍ରମରେ ଆସୁଛି ସେ ସଂପର୍କରେ ସେ ଆଲୋକପାତ କରିଥିଲେ। "ମ୍ୟୁଟେସନ" ଦ୍ୱାରା ମଣିଷ ଶରୀର କିଭଳି ଭାବରେ ପ୍ରଭାବିତ ହେଉଛି, ମଣିଷମାନଙ୍କ ମଧ୍ୟରେ କେଉଁ ହାରରେ ମ୍ୟୁଟେସନ ହେଉଛି ଏବଂ ତାହା କିପରି ନିର୍ଣ୍ଣୟ କରାଯିବ ସେଥିପାଇଁ ସେ ଉପାୟ ସ୍ଥିର କରିଥିଲେ। ମଣିଷର କୋଷରେ ଛୟାଳିଶିଟି ଗୁଣ ସୂତ୍ର ବା କ୍ରୋମୋଜମ୍ ରହିଛି। ଏହି ଗୁଣ ସୂତ୍ର ଗୁଡ଼ିକରେ ମଣିଷର ବିଭିନ୍ନ ଚରିତ୍ରକୁ ନିୟନ୍ତ୍ରଣ କରୁଥିବା ଜିନ୍‌ଗୁଡ଼ିକ କିପରି ଓ କେଉଁଠାରେ ଅବସ୍ଥାନ କରିଛନ୍ତି ସେକଥା ନିର୍ଣ୍ଣୟ କରିବା ପାଇଁ ସେ ନୂତନ ପଦ୍ଧତିର ଉଦ୍ଭାବନ କରିଥିଲେ। ଏତଦ୍‌ବ୍ୟତୀତ ଆତ୍ମୀୟ ସ୍ୱଜନମାନଙ୍କ ମଧ୍ୟରେ ବିବାହ କଲେ ମଣିଷ ସମାଜର କି କି କ୍ଷତି ଘଟେ ସେକଥା ସେ ସ୍ପଷ୍ଟଭାବରେ ଉଲ୍ଲେଖ କରିଯାଇଛନ୍ତି।

ମାନବୀୟ ଶରୀରତତ୍ତ୍ୱ ପାଇଁ ତାଙ୍କର ଅବଦାନ ତାଙ୍କୁ ଚିର ସ୍ମରଣୀୟ କରିରଖିବ। ଗବେଷଣା ଉଦ୍ଦେଶ୍ୟରେ ସେ ନିଜ ଜୀବନକୁ ବିପନ୍ନ କରି

ବିଷାକ୍ତ ରାସାୟନିକ ପଦାର୍ଥ ଭକ୍ଷଣ କରିଥିଲେ ଏବଂ ଗଭୀରଜଳକୁ ଲମ୍ଫ ପ୍ରଦାନ କରିଥିଲେ। ନିଜକୁ ଗିନିପିଗ୍ ହିସାବରେ ବ୍ୟବହାର କରି କାର୍ବନ ମନୋକସାଇଡ୍ ଗ୍ୟାସର ଖଣି ଶ୍ରମିକଙ୍କର ସ୍ୱାସ୍ଥ୍ୟ ଉପରେ ପ୍ରଭାବ ସମ୍ପର୍କରେ ଗବେଷଣା କରିଥିଲେ ଏବଂ ଗଭୀର ଜଳରେ ବୁଡ଼ାଳୀମାନେ ନିଜକୁ ସୁରକ୍ଷିତ ରଖିପାରିବା ପାଇଁ ନୂତନ ଉପାୟ ସ୍ଥିର କରିଥିଲେ।

ଜୈବ ବିବର୍ତ୍ତନବାଦ ଉପରେ ହାଲ୍‌ଡ଼େନ୍ ବିଶେଷ ଭାବରେ ଅନୁଧ୍ୟାନ କରି ଜୀବଜଗତର ସୃଷ୍ଟି ସମ୍ବନ୍ଧୀୟ ଅନେକ ବୈଜ୍ଞାନିକ ପ୍ରବନ୍ଧ ଲେଖିଥିଲେ। ସେଗୁଡ଼ିକ ଗବେଷକମାନଙ୍କୁ ଗବେଷଣାପାଇଁ ବିଶେଷଭାବରେ ପ୍ରଭାବିତ କରିଥିଲା। ବିବର୍ତ୍ତନବାଦ ସମ୍ବନ୍ଧୀୟ ଗବେଷଣାରେ ପରିସଂଖ୍ୟାନ ଶାସ୍ତ୍ରର କିଭଳି ଭାବରେ ଉପଯୋଗ କରାଯାଇପାବ ସେକଥା ସେ ଉଲ୍ଲେଖ କରିଥିଲେ ଏବଂ ନିଜର ଗବେଷଣା ଗୁଡ଼ିକରେ ଏହି ଶାସ୍ତ୍ର ପ୍ରୟୋଗ କରି ଉଚ୍ଚକୋଟୀର ବୈଜ୍ଞାନିକ ନିବନ୍ଧ ରଚନା କରିଥିଲେ।

ପ୍ରଫେସର ହ୍ୱାଇଟ୍ ହାଲ୍‌ଡ଼େନ୍‌ଙ୍କର ବୈଜ୍ଞାନିକ କାର୍ଯ୍ୟକଳାପ ଗୁଡ଼ିକର ଗଭୀର ଅନୁଶୀଳନ କରି ତାଙ୍କୁ ବିଂଶ ଶତାବ୍ଦୀର ଜଣେ ବିଦ୍ୱାନ୍ ବୈଜ୍ଞାନିକ ହିସାବରେ ଗଣନା କରିଛନ୍ତି। ତାଙ୍କର ବୈଜ୍ଞାନିକ ଚିନ୍ତାଧାରା ଓ କାର୍ଯ୍ୟକଳାପ ଏତେ ସୁଦୂର ପ୍ରସାରୀ ଯେ ଏହାକୁ ଜଣେ କିମ୍ବା ଦୁଇଜଣ ବୈଜ୍ଞାନିକ ସମୀକ୍ଷା କରି କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିବେ ନାହିଁ। ହାଲ୍‌ଡ଼େନ୍‌ଙ୍କର ବୈଜ୍ଞାନିକ ଚିନ୍ତାଧାରା ଓ କାର୍ଯ୍ୟକଳାପର ସମୀକ୍ଷା କରିବାକୁ ହେଲେ ଗଣିତ ଶାସ୍ତ୍ରରେ ପାରଙ୍ଗମ ଥିବା ଅନ୍ତତଃ ପକ୍ଷେ ଜଣେ ଜଣେ ଜୈବ ରସାୟନବିତ, ଶରୀରତତ୍ତ୍ୱ ବିତ୍, ପରିସଂଖ୍ୟାନ ଶାସ୍ତ୍ରବିତ୍, ବିବର୍ତ୍ତନବାଦ ବିଶେଷଜ୍ଞ, ଆନୁବଂଶିକୀ ବିଶେଷଜ୍ଞ, ନୀତିଶାସ୍ତ୍ର ବିଶେଷଜ୍ଞଙ୍କୁ ନେଇ ଏକ କମିଟି ଗଠନ କରିବାକୁ ପଡ଼ିବ। ଏହି କମିଟି କେବଳ ତାଙ୍କର କାର୍ଯ୍ୟକଳାପକୁ ସମୀକ୍ଷା କରି ତା ସଂପର୍କରେ ନିଜର ମତାମତ ଦେଇପାରିବ। ପ୍ରଫେସର ହାଲ୍‌ଡ଼େନ୍ ନିଜର କର୍ତ୍ତବ୍ୟନିଷ୍ଠା ଓ ଅଧ୍ୟବସାୟ ବଳରେ ଯେଉଁ ଉଚ୍ଚ ଆସନର ଅଧିକାରୀ ହୋଇପାରିଛନ୍ତି ତାହା ବୈଜ୍ଞାନିକ, ରାଜନୀତିଜ୍ଞ ଓ ସାଧାରଣ ଜନ ସମୁଦାୟକୁ ମଧ୍ୟ ପ୍ରଭାବିତ କରିଯାଇଛି। ତାଙ୍କର ଏହି ଅବଦାନ ପାଇଁ ତାଙ୍କୁ "ବିଜ୍ଞାନ ଜଗତର ଋଷି" ଆଖ୍ୟା ଦିଆଯାଇ ସମ୍ମାନିତ କରାଯାଇଛି।

—୦—

# ୧୦

# ହାଲ୍‌ଡ଼େନ୍‌ଙ୍କ ଉପରେ ଡ଼ାରଉଇନ୍ ଓ ମେଣ୍ଡେଲଙ୍କର ପ୍ରଭାବ

ପ୍ରଫେସର ହାଲ୍‌ଡ଼େନ୍ କହିଥିଲେ, "ଆମେ ଯାହା ଚିନ୍ତା କରୁଛୁ କେବଳ ଯେ ତାହାଠାରୁ ଏ ବିଶ୍ୱ ଅଧିକ ବିଚିତ୍ର ତାହା ନୁହେଁ, ଆମେ ଯାହା ଚିନ୍ତା କରି ନପାରୁଛୁ ତାହାଠାରୁ ମଧ ଏ ବିଶ୍ୱ ଅଧିକ ବିଚିତ୍ର।" ବାସ୍ତବରେ ବୈଚିତ୍ର୍ୟମୟ ଏ ସୃଷ୍ଟି। ଏ ଜଗତର ଅସଂଖ୍ୟ ପ୍ରାଣୀ ଓ ଉଭିଦ ବିଷୟରେ ଚିନ୍ତାକଲେ ମନରେ ବିସ୍ମୟର ସୃଷ୍ଟିହୁଏ। ସ୍ୱତଃ ପ୍ରଶ୍ନ ଉଠେ ଏତେ ପ୍ରକାରର ପ୍ରାଣୀ ଏବଂ ଉଭିଦ ସୃଷ୍ଟି ହେଲେ କେମିତି ?

ଏ ପ୍ରଶ୍ନର ଉତ୍ତର ଦେବାପାଇଁ ଅନେକ ବୈଜ୍ଞାନିକ ଓ ଦାର୍ଶନିକ ଚେଷ୍ଟା କରିଥିଲେ। ମାତ୍ର କେହି ସନ୍ତୋଷଜନକ ଉତ୍ତର ଦେଇ ପାରିନଥିଲେ। ପ୍ରଧାନ ଜୀବତତ୍ତ୍ୱବିତ୍ ଚାର୍ଲସ ଡ଼ାରଉଇନଙ୍କର "ଅରିଜିନ୍ ଅଫ୍ ସ୍ପେସିସ୍" ନାମକ ଗ୍ରନ୍ଥ ପ୍ରକାଶ ନହେବା ପର୍ଯ୍ୟନ୍ତ ଇଉରୋପୀୟ ଓ ଅନ୍ୟାନ୍ୟ ଦେଶର ବ୍ୟକ୍ତିମାନେ ଧର୍ମ ପୁସ୍ତକରେ ପ୍ରଚାରିତ ଜୀବଜାତିମାନଙ୍କର ଅପରିବର୍ତ୍ତନୀୟତାରେ ବିଶ୍ୱାସ ରଖିଥିଲେ। କିନ୍ତୁ ଡ଼ାରଉଇନ ପ୍ରାଣିଜାତିମାନଙ୍କର କ୍ରମ ବିକାଶକୁ ବିଜ୍ଞାନ ଭିତ୍ତିରେ ପ୍ରତିଷ୍ଠିତ କରିବା ନିମନ୍ତେ ଯଥେଷ୍ଟ ପ୍ରମାଣ ସଂଗ୍ରହ କରିଥିଲେ ଏବଂ ତାଙ୍କର ବିବର୍ତ୍ତନ ମତବାଦ ପ୍ରଚାର କରିବାପରେ ଲୋକମାନେ ବିବର୍ତ୍ତନ ପ୍ରଣାଳୀରେ ପ୍ରାଣୀମାନଙ୍କର ଉତ୍ପତ୍ତି ହୋଇଛି ବୋଲି ସ୍ୱୀକାର କରିଥିଲେ।

ବିବର୍ତ୍ତନବାଦ ମତ ଅନୁଯାୟୀ ସମସ୍ତ ଉଚ୍ଚ ଶ୍ରେଣୀର ଜୀବ କ୍ରମ ପରିବର୍ତ୍ତନ ପ୍ରକ୍ରିୟାରେ ନିମ୍ନ ଶ୍ରେଣୀର ଜୀବମାନଙ୍କଠାରୁ ଉଦ୍ଭୂତ ହୋଇଅଛନ୍ତି। ବହିଃ ପରିବେଷ୍ଟନୀର ପରିବର୍ତ୍ତନ ବଶତଃ ଉଭିଦ ଓ ପ୍ରାଣୀମାନେ ପରିବର୍ତ୍ତିତ ତଥା ନୂତନ ପରିବେଷ୍ଟନୀ ପ୍ରତି ନିଜକୁ ଆତ୍ମରକ୍ଷାର୍ଥେ ସଜ୍ଜିତ କରୁ କରୁ ବିଭିନ୍ନ ନୂତନ ପ୍ରାଣୀଜାତିରେ ପରିଣତ ହୋଇଯାଇଅଛନ୍ତି। ଏହି ମତରେ ଆଦିମ ପ୍ରାଣୀଜାତିଠାରୁ ଆରମ୍ଭ କରି ଇଦାନୀନ୍ତନ ଉତ୍କୃଷ୍ଟତମ ପ୍ରାଣୀ ପର୍ଯ୍ୟନ୍ତ ସମସ୍ତେ ପରସ୍ପର ସହିତ ଏକ କ୍ରମ ବିବର୍ତ୍ତନ ସୂତ୍ରରେ ଆବଦ୍ଧ। ବିବର୍ତ୍ତନବାଦ ମତ ଅନୁସାରେ ବିଭିନ୍ନ ପ୍ରାଣୀ ଜାତି ମଧ୍ୟରେ ଗୋଟିଏ କ୍ରମ ବିବର୍ତ୍ତନ



ବୈଜ୍ଞାନିକ ଚାର୍ଲସ ଡାରଉଇନ୍



ଆନୁବଂଶିକ ବିଜ୍ଞାନର ପିତା ଗ୍ରେଗର ଜୋହାନ୍ ମେଣ୍ଡେଲ୍

ସ୍ରୋତ ଚାଲିଅଛି। ଏହାର ଅର୍ଥ ଏହିଯେ ତଳ ଶ୍ରେଣୀର ଜୀବ କ୍ରମେ କ୍ରମେ ପରିବର୍ତ୍ତିତ ହୋଇ ଉପର ଶ୍ରେଣୀର ଜୀବ ରୂପରେ ପରିଣତ ହୋଇଅଛନ୍ତି। ଏପରିକି ମାନବ ମଧ୍ୟ ତାହାର ପୂର୍ବବର୍ତ୍ତୀ ନିମ୍ନଶ୍ରେଣୀର ପ୍ରାଣୀମାନଙ୍କଠାରୁ କ୍ରମ ବିବର୍ତ୍ତନ ପ୍ରକ୍ରିୟାରେ ଉତ୍ପତ୍ତି ଲାଭ କରିଅଛି। ଡ଼ାରଉଇନ୍‌ଙ୍କ ମତରେ ଭିନ୍ନ ଭିନ୍ନ ପ୍ରାଣିଜାତି ଅଳ୍ପ କେତୋଟି ଜୀବକୋଷରୁ ଉଦ୍ଭୂତ ହୋଇଅଛନ୍ତି ଏବଂ ସେମାନଙ୍କ ମଧ୍ୟରେ ଜୀବନରକ୍ଷାର୍ଥେ ନିରନ୍ତର ସଂଗ୍ରାମ ଲାଗିରହିଅଛି।

ଡ଼ାରଉଇନଙ୍କ ପ୍ରଦତ୍ତ ବିବର୍ତ୍ତନବାଦ ତଥ୍ୟ ଆଜି ସମସ୍ତଙ୍କ ମଧ୍ୟରେ ଆଦୃତ ହୋଇଅଛି। ଡ଼ାରଉଇନ୍‌ଙ୍କ ମତ ଅନୁସାରେ ଉପରଶ୍ରେଣୀର ଜୀବମାନେ ତଳସ୍ତରର ଜୀବମାନଙ୍କଠାରୁ ଉଦ୍ଭୂତ ହୋଇଛନ୍ତି ଏବଂ ସେମାନଙ୍କର ମଧ୍ୟବର୍ତ୍ତୀ ଅବସ୍ଥାର ଜୀବମାନଙ୍କର ଜୀବାଶ୍ମ ବିଶେଷ ଅନୁସନ୍ଧାନ କଲେ ମିଳିପାରିବ। ଡ଼ାରଉଇନଙ୍କର ଏହି ତଥ୍ୟ ସତରେ ପରିଣତ ହୋଇଛି କାରଣ ମାଙ୍କଡ଼ ଓ ମଣିଷର ମଧ୍ୟବର୍ତ୍ତୀ ଅବସ୍ଥା ଭଳି ମନେହେଉଥିବା ଅନ୍ତତଃ ଛଅଟି ଭିନ୍ନ ଧରଣର ପ୍ରାଣୀର ଜୀବାଶ୍ମ ଓ କଙ୍କାଳ ବୈଜ୍ଞାନିକମାନେ ଆବିଷ୍କାର କରିଛନ୍ତି। କେତେକ ବୈଜ୍ଞାନିକ ମତ ଦେଉଛନ୍ତି ଯେ ଏହି ମାନଙ୍କ ମଧ୍ୟରୁ କେତୋଟି ପ୍ରାଣୀ ଅଗ୍ନିର ବ୍ୟବହାର କରିପାରୁଥିଲେ। କାଳକ୍ରମେ ସେମାନେ ଜୀବନରକ୍ଷଣାର୍ଥେ ଲାଗିଥିବା ସଂଗ୍ରାମ ମଧ୍ୟରେ ପୃଥିବୀ ପୃଷ୍ଠରୁ ନିଶ୍ଚିହ୍ନ ହୋଇଯାଇ ଅଛନ୍ତି।

ବିସ୍ମୟକର ଏ ସୃଷ୍ଟି, ବିସ୍ମୟକର ଏ ଜୀବଜଗତ । ମଣିଷ ସୃଷ୍ଟିର ବିସ୍ମୟକୁ ବୁଝିନପାରିଲେ ସର୍ବନିୟନ୍ତା ଭଗବାନଙ୍କର ସ୍ମରଣ କରେ ଏବଂ ବିଶ୍ୱାସ କରେ ଭଗବାନଙ୍କର ଏ ସୃଷ୍ଟିର ରହସ୍ୟ ବଡ଼ ଜଟିଳ। ସମସ୍ତେ ଉପଲବ୍ଧି କରୁଛନ୍ତି ଯେ ସୃଷ୍ଟିରେ ଅସଂଖ୍ୟ ଜୀବଜନ୍ତୁ ରହିଛନ୍ତି। ପ୍ରତ୍ୟେକ ପ୍ରାଣୀ ଓ ଉଦ୍ଭିଦର କ୍ରମ ବିବର୍ତ୍ତନ ଯାହା ହେଉନା କାହିଁକି ସେ ନିଜ ଭଳି ଏକ ପ୍ରାଣୀ ବା ଉଦ୍ଭିଦକୁ ଜନ୍ମ ଦେଉଛି।। କୁକୁରଟିଏ କେବଳ କୁକୁର ଛୁଆ ଜନ୍ମ ଦେଉଛି, ହାତୀଟିଏ ହାତୀଛୁଆ ଜନ୍ମ ଦେଉଛି, କୁକୁଡ଼ାଟିଏ କୁକୁଡ଼ା ଛୁଆ ଜନ୍ମ ଦେଉଛି। କିନ୍ତୁ କୁକୁରଟିଏ କେବେ କୁକୁଡ଼ା ଛୁଆଟିଏ ଜନ୍ମ କରୁନାହିଁ କିମ୍ବା କୁମ୍ଭୀର ଟିଏ କଇଁଛ ଛୁଆଟିଏ ଜନ୍ମ କରୁନାହିଁ। ସେହିଭଳି ଉଦ୍ଭିଦ ଜଗତରେ ଧାନ ମଞ୍ଜି ବୁଣିଲେ ଧାନଗଛର ସୃଷ୍ଟି ହେଉଛି, ମକାମଞ୍ଜି ବୁଣିଲେ ମକା ଗଛର ସୃଷ୍ଟି ହେଉଛି କିନ୍ତୁ ବରଗଛ ମଞ୍ଜିରୁ ବାଉଁଶ ଗଛର ସୃଷ୍ଟି ହେଉନାହିଁ କିମ୍ବା ଧାନ ଗଛ ମଞ୍ଜିରୁ ଶାଳ ଗଛର ସୃଷ୍ଟି ହେଉନାହିଁ।

ଏକଥା ଠିକ୍ ଯେ କୁକୁଡ଼ା ଅଣ୍ଡାରୁ କୁକୁଡ଼ା ଛୁଆ ଜନ୍ମ ନିଅନ୍ତି। ମାଆ କୁକୁଡ଼ା ଭଳି ସେମାନଙ୍କର ଦୁଇଟି ଗୋଡ଼ ଦୁଇଟି ଡେ଼ଣା, ଥଣ୍ଟ ଓ ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ରହିଥାଏ। କିନ୍ତୁ ଆମେ ଯଦି ଗୋଟିଏ କୁକୁଡ଼ାର ସବୁ ପିଲାକୁ ନିରୀକ୍ଷଣ କରି ଦେଖିବା, ତାହେଲେ ଏକ ନୂଆକଥା ଅନୁଭବ କରିପାରିବା। ସେଇଟି ହେଲା, ଗୋଟିଏ କୁକୁଡ଼ାର ଅଣ୍ଡାରୁ ଯେତେ ଛୁଆ ଜନ୍ମ ନେଇଛନ୍ତି ସେଗୁଡ଼ିକ ପରସ୍ପରଠାରୁ ଅଲଗା। କାହାର ପକ୍ଷୀର ରଙ୍ଗ ଧଳା ଓ କାହାର କଳା ବା ମିଶ୍ରିତ ରଙ୍ଗ ହୋଇଛି। ସମସ୍ତଙ୍କର ଚୂଳ ଏକ ପ୍ରକାରର ନୁହେଁ।

ପ୍ରଶ୍ନ ଉଠେ, ଏଭଳି କାହିଁକି ହୁଏ ?

ଏ ପ୍ରଶ୍ନର ଉତ୍ତର ଦେବାପାଇଁ ଅନେକ ବୈଜ୍ଞାନିକ, ଦାର୍ଶନିକ ଓ ଗବେଷକ ଚେଷ୍ଟାକରି ବିଫଳ ହୋଇଥିଲେ। ମାତ୍ର ଗ୍ରେଗର୍ ଜୋହାନ୍ ମେଣ୍ଡେଲ୍ ନାମକ ଜଣେ ଧର୍ମଯାଜକ ଏହି ପ୍ରଶ୍ନର ସଠିକ ଉତ୍ତର ଦେଇ ଜଗତକୁ ଚମତ୍କୃତ କରି ଦେଇଥିଲେ। ସେ ୧୮୬୫ ମସିହାରେ ଏ ପ୍ରଶ୍ନ ଉପରେ ଗବେଷଣା କରି ଆଲୋକପାତ କରିଥିଲେ ମଧ ତାହା ୧୯୦୦ ମସିହା ପର୍ଯ୍ୟନ୍ତ ବୈଜ୍ଞାନିକମାନଙ୍କ ଦ୍ୱାରା ଆଦୃତ ହୋଇ ପାରିନଥିଲା। ୧୯୦୦ ମସିହାରେ ତିନିଜଣ ବିଶିଷ୍ଟ ବୈଜ୍ଞାନିକ କରେନସ୍, ଚେରମାର୍କ ଓ ଡ଼ିଭ୍ରାଇସ ଏହି ତଥ୍ୟକୁ ପୁନଃ ଆବିଷ୍କାର କରି ବୈଜ୍ଞାନିକ ମହଲରେ ଆଦୃତ କଲେ। ପରବର୍ତ୍ତୀ କାଳରେ ଏହି ବିଷୟରେ ନୂତନ ଗବେଷଣା ହୋଇ ଏକ ନୂତନ ବିଜ୍ଞାନ ବିଭାଗର ସୃଷ୍ଟି ହୋଇଥିଲା। ପ୍ରଖ୍ୟାତ ବୈଜ୍ଞାନିକ ଉଇଲିୟମ୍ ବ୍ୟାଟେସନ୍ ଏହାର ନାମ "ଆନୁବଂଶିକୀ ବିଜ୍ଞାନ" ରଖିଥିଲେ ଏବଂ ଗ୍ରେଗର ମେଣ୍ଡେଲଙ୍କୁ "ଆନୁବଂଶିକୀ ବିଜ୍ଞାନର ପିତା" ହିସାବରେ ମାନ୍ୟତା ପ୍ରଦାନ କରାଯାଇଥିଲା।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ବିବର୍ତ୍ତନବାଦ ଓ ଆନୁବଂଶିକୀ ବିଜ୍ଞାନ ସମ୍ପର୍କରେ ବିଶେଷ ଭାବରେ ଆଲୋଚନା ହେଉଥିଲା। ହାଲଡ଼େନ୍ ଏହି ସମୟରେ ଅକସଫୋର୍ଡ଼ ବିଶ୍ୱବିଦ୍ୟାଳୟର ନିଉକଲେଜଠାରେ ଗଣିତ ଶାସ୍ତ୍ରକୁ ଅନର୍ସ ରଖି ଅଧ୍ୟୟନ କରୁଥିଲେ। ମାତ୍ର ଦିନର ସମସ୍ତ ସମୟ ଗଣିତ ପଢ଼ିବାକୁ ତାଙ୍କୁ ଭଲ ଲାଗୁନଥିଲା। ତେଣୁ ସେ ପ୍ରଫେସର ଗୁଡ଼ରିକଙ୍କର ପ୍ରାଣୀ ବିଜ୍ଞାନର ଅନର୍ସ ଶ୍ରେଣୀରେ କିଛି ସମୟ ଲେଖାଏଁ ବସୁଥିଲେ। ଏହି ସମୟରେ ସେ ପ୍ରାଣୀ ବିଜ୍ଞାନ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇଥିଲେ।

ପ୍ରଫେସର ଗୁଡ଼ରିକ ବିବର୍ତ୍ତନବାଦ ତତ୍ତ୍ୱକୁ ସୁନ୍ଦରଭାବରେ ଶ୍ରେଣୀରେ ବୁଝାଇବା ପରେ ହାଲ୍‌ଡ଼େନ୍ ଡ଼ାରଉଇନଙ୍କର ଏହି ତତ୍ତ୍ୱ ମଧ୍ୟରେ ଥିବା ଗୁଢ଼ ରହସ୍ୟକୁ ବୁଝିବା ପାଇଁ ଚେଷ୍ଟା କରିଥିଲେ। ହାଲ୍‌ଡ଼େନ୍ ଗଣିତ ଶାସ୍ତ୍ରର ଛାତ୍ରହେଲେ ମଧ୍ୟ ବିଜ୍ଞାନର ବିଭିନ୍ନ ସେମିନାର ଶୁଣିବାକୁ ଭଲ ପାଉଥିଲେ। ଥରେ ସେ ଅକସ୍‌ଫୋର୍ଡ଼ ବିଶ୍ୱବିଦ୍ୟାଳୟର ଜୁନିୟର ସାଇଣ୍ଟିଫିକ କ୍ଲବରେ ପ୍ରଫେସର ଡ଼ର୍ବିସାୟାରଙ୍କ ଦ୍ୱାରା ପ୍ରଦତ୍ତ ଗ୍ରେଗର୍ ମେଣ୍ଡେଲ୍‌ଙ୍କର ଆନୁବଂଶିକୀ ତତ୍ତ୍ୱ ସମ୍ପର୍କୀୟ ଏକ ବକ୍ତୃତା ଶୁଣିଥିଲେ। ଏହି ବକ୍ତୃତା ତାଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲା। ସେ ଆନୁବଂଶିକୀ ବିଭାଗରେ ନୂତନ ଗବେଷଣା କରିବାପାଇଁ ବିଶେଷ ଆଗ୍ରହୀ ହୋଇପଡ଼ିଥିଲେ। ଅଳ୍ପ କେତେ ବର୍ଷ ମଧ୍ୟରେ ସେ ଭଉଣୀ ନାଓମିଙ୍କ ପାଳିତ ଗିନିପିଗ୍ ଗୁଡ଼ିକୁ ପର୍ଯ୍ୟବେକ୍ଷଣ କରି ପ୍ରଫେସର ଗୁଡ଼ରିକଙ୍କର ଏକ ସେମିନାରରେ "ଲିଙ୍କେଜ ତତ୍ତ୍ୱ" ସମ୍ପର୍କରେ ଆଲୋକପାତ କରିଥିଲେ। ସେ ଗଣିତ ଅଧ୍ୟୟନ କରୁଥିବା ଜଣେ ଛାତ୍ର ଥିଲେ କିନ୍ତୁ ନୂତନ ହୋଇ ଆବିଷ୍କୃତ ହୋଇଥିବା ଆନୁବଂଶିକୀ ତତ୍ତ୍ୱ ଉପରେ ସ୍ୱତଃପ୍ରବୃତ୍ତ ଭାବରେ ଗବେଷଣା କରି ଏହି ତତ୍ତ୍ୱର ଏକ ନୂତନ ଦିଗ ସଂପର୍କରେ ଆଲୋକପାତ କରିବା ଯୋଗୁଁ ପ୍ରଫେସର ଗୁଡ଼ରିକ୍‌ଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଶଂସିତ ହୋଇଥିଲେ।

ଉଇଲିୟମ୍ ବ୍ୟାଟେସନ୍ ୧୯୦୬ ମସିହାରେ ଲିଙ୍କେଜ ତତ୍ତ୍ୱ ସମ୍ପର୍କରେ ପ୍ରଥମେ ଆଲୋକପାତ କରିଥିଲେ। ହାଲ୍‌ଡ଼େନ୍ ବ୍ୟାଟସନଙ୍କର ଏହି ତତ୍ତ୍ୱକୁ ଗଭୀର ଭାବରେ ବିଶ୍ଳେଷଣ କରିଥିଲେ ଏବଂ ଆନୁବଂଶିକୀ ବିଜ୍ଞାନ ଶାସ୍ତ୍ରରେ ଗଣିତ ଶାସ୍ତ୍ରର ପ୍ରୟୋଗ କରି ଗବେଷଣା କରିବା ପାଇଁ ସ୍ଥିର କରିଥିଲେ। କେତେକ ସମୀକ୍ଷକ ମତ ଦିଅନ୍ତି ଯେ ହାଲ୍‌ଡ଼େନ୍ ବ୍ୟାଟସନଙ୍କର ସଂସ୍ପର୍ଶରେ ଆସି ଆନୁବଂଶିକୀ ଓ ବିବର୍ତ୍ତନବାଦ ବିଜ୍ଞାନର ଉପଯୋଗୀତା ସମ୍ବନ୍ଧରେ ଅବଗତ ହୋଇଥିଲେ ଏବଂ ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ବିବର୍ତ୍ତନବାଦ ତତ୍ତ୍ୱ ଉପରେ ଉତ୍କୃଷ୍ଟ ମାନର ବୈଜ୍ଞାନିକ ନିବନ୍ଧ ରଚନା କରିଥିଲେ। ଉଇଲିୟମ ବ୍ୟାଟସନ୍, ପ୍ରଫେସର ଗୁଡ଼୍‌ରିକ, ପ୍ରଫେସର ହପକିନସ୍ ଓ ତାଙ୍କର ପିତା ଜନ୍ ସ୍କଟ୍ ହାଲ୍‌ଡ଼େନ୍ ତାଙ୍କୁ ଜୀବ ବିଜ୍ଞାନ ପ୍ରତି ଆକର୍ଷିତ କରିଥିଲେ। ଏହି ମହାନ୍ ବୈଜ୍ଞାନିକମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ ନିଜର ଭବିଷ୍ୟତ ବୈଜ୍ଞାନିକ ଜୀବନର ଏକ ରୂପରେଖ ମନେ ମନେ ସ୍ଥିର କରି ନେଇଥିଲେ।

ଡ଼ାରଉଇନ୍ ଓ ମେଣ୍ଡେଲଙ୍କୁ ଅନୁସରଣ କରି ହାଲ୍‌ଡ଼େନ୍ ସମଗ୍ର ପ୍ରକୃତିକୁ ତାଙ୍କର ଗବେଷଣାଗାର ଭାବରେ ଗ୍ରହଣ କରିନେଇଥିଲେ। ପ୍ରକୃତି

କୋଳରେ ବଢ଼ି ଉଠିଥିବା ବିଭିନ୍ନ ପ୍ରକାରର ପ୍ରାଣୀ ଓ ଉଦ୍ଭିଦମାନଙ୍କର ବିବର୍ତ୍ତନ କ୍ରିୟାର ପଦ୍ଧତି, ବଂଶାନୁକ୍ରମ ଓ ବିଭିନ୍ନତାକୁ ଗଣିତଶାସ୍ତ୍ରର ପ୍ରୟୋଗ କରି ବିଶ୍ଳେଷଣ କରିବାକୁ ଚେଷ୍ଟା କରିଥିଲେ। ୧୯୨୪ ମସିହାଠାରୁ ଆରମ୍ଭ କରି ଜୀବନର ଶେଷ ପର୍ଯ୍ୟନ୍ତ ଡ଼ାରଉଇନ୍‌ଙ୍କ ଚିନ୍ତାଧାରକୁ ନେଇ ସେ ଗବେଷଣା କରିଥିଲେ ଏବଂ ଅନେକଗୁଡ଼ିଏ ବୈଜ୍ଞାନିକ ନିବନ୍ଧ ପ୍ରକାଶ କରିଥିଲେ। ଡ଼ାରଉଇନଙ୍କ ସମ୍ପର୍କରେ ସେ "ଡ଼େଲି ଓ୍ୱାରକର" ପତ୍ରିକାରେ ଲେଖିଥିଲେ "ଡ଼ାରଉଇନଙ୍କର ବିବର୍ତ୍ତନବାଦ ଊନବିଂଶ ଶତାବ୍ଦୀର ଏକ ବିଶେଷ ବୈଜ୍ଞାନିକ ତତ୍ତ୍ୱ ଅଟେ। ବର୍ତ୍ତମାନ କେହି କେହି ଏହି ତଥ୍ୟରେ ନିହିତ ଥିବା ତ୍ରୁଟିକୁ ଲୋକଲୋଚନକୁ ଆଣୁଛନ୍ତି। କାରଣ ସେ ତ୍ରୁଟିବିହୀନ ନଥିଲେ। ସେହିଭଳି ଭାବରେ ଦେଖିବାକୁ ଗଲେ ନିଉଟନଙ୍କ ଦ୍ୱାରା ପ୍ରଦତ୍ତ ମାଧ୍ୟାକର୍ଷଣ ଶକ୍ତି ସମ୍ପର୍କୀତ ତତ୍ତ୍ୱ ମଧ୍ୟ ସମ୍ପୂର୍ଣ୍ଣ ଭାବରେ ଠିକ୍ ନୁହେଁ। କିନ୍ତୁ ଏହା ଯେଉଁ ଉଦ୍ଦେଶ୍ୟ ନେଇ ପ୍ରବର୍ତ୍ତିତ ହୋଇଥିଲା ସେ ଦୃଷ୍ଟିକୋଣରୁ ଆଦୌ ଭୁଲ୍ ନୁହେଁ। ବୈଜ୍ଞାନିକ ଡ଼ାଲଟନ୍‌ଙ୍କ ଦ୍ୱାରା ପ୍ରଦତ୍ତ ଅଣୁତତ୍ତ୍ୱର ପରିବର୍ତ୍ତନ କରି ନୂତନ ଅଣୁ ତତ୍ତ୍ୱର ପ୍ରବର୍ତ୍ତନ କରାଯାଇଛି, କିନ୍ତୁ ଏହାକୁ ବର୍ତ୍ତମାନ ମଧ୍ୟ ରସାୟନ ଶାସ୍ତ୍ରର ଭିତ୍ତି ଭାବରେ ଗ୍ରହଣ କରାଯାଉଛି।

ଡ଼ାରଉଇନ ଊନବିଂଶ ଶତାବ୍ଦୀରେ ବିବର୍ତ୍ତନବାଦ ସମ୍ବନ୍ଧରେ ମତ ବ୍ୟକ୍ତ କଲାବେଳେ ଆମ୍ଭମାନଙ୍କର ପ୍ରାଣୀ ଓ ଉଦ୍ଭିଦମାନଙ୍କ ସଂପର୍କରେ ବର୍ତ୍ତମାନ ଖୁବ୍ କମ୍ ଜ୍ଞାନ ଥିଲା। ସେ କହିଥିଲେ ଯେ ଉଚ୍ଚ ଜାତିର ପ୍ରାଣୀମାନେ ଅତୀତର ନିମ୍ନଜାତିର ପ୍ରାଣୀମାନଙ୍କଠାରୁ ଉଦ୍ଭୁତ ହୋଇ ଅଛନ୍ତି ଏବଂ ସେମାନଙ୍କର ମଧ୍ୟବର୍ତ୍ତୀ ପ୍ରାଣୀମାନଙ୍କୁ ବୈଜ୍ଞାନିକମାନେ ଭବିଷ୍ୟତରେ ଆବିଷ୍କାର କରିପାରିବେ। ଯଦି ସେଗୁଡ଼ିକ ମିଳିନଥାନ୍ତେ ତାହେଲେ ତାଙ୍କର ତଥ୍ୟ ଭୁଲ୍ ସାବ୍ୟସ୍ତ ହୋଇଥାଆନ୍ତା। ମାତ୍ର କେତେଗୁଡ଼ିଏ ମଧ୍ୟବର୍ତ୍ତୀ ପ୍ରାଣୀଗୁଡ଼ିକ ଆବିଷ୍କୃତ ହୋଇଅଛନ୍ତି। ଏହି ପ୍ରାଣୀଗୁଡ଼ିକର ଜୀବାସ୍ମ ଡ଼ାରଉଇନ ଅନୁମାନ କରିଥିବା ଗଭୀରତାରେ ଥିବା ଶୀଳା ଦେହରୁ ଆବିଷ୍କୃତ ହୋଇ ଅଛନ୍ତି। କୌଣସି ପ୍ରାଚୀନ ମାନବ ବା ଘୋଡ଼ାର କଙ୍କାଳ ଯଦି ଏହି ଗଭୀର ସ୍ତରରେ ଥିବା କୋଇଲାଖଣ୍ଡରେ ଲାଗିରହି ଜିବାସ୍ମ ଭାବରେ ଆବିଷ୍କୃତ ହୋଇଯିବ, ତେବେ ଆଗାମୀ ଦିନଗୁଡ଼ିକରେ ଡ଼ାରଉଇନଙ୍କ ବିବର୍ତ୍ତନବାଦ ସମସ୍ତଙ୍କ ଚର୍ଚ୍ଚାର ବିଷୟ ହୋଇ ପଡ଼ିବ।"

ହାଲ୍‌ଡ୍ରେନ୍‌ଙ୍କର ଏହି ପ୍ରବନ୍ଧରୁ ତାଙ୍କର ଡ଼ାରଉଇନଙ୍କ ପ୍ରତି ଥିବା ମନୋଭାବକୁ ସ୍ପଷ୍ଟ ଭାବରେ ପ୍ରକାଶ କରିପାରିଛି । ହାଲ୍‌ଡ୍ରେନ୍ ଡ଼ାରଉଇନଙ୍କର ତତ୍ତ୍ୱକୁ ଭିତ୍ତିକରି ଦି କଜେସ୍ ଅଫ୍ ଇଭଲ୍ୟୁସନ୍ (ବିବର୍ତ୍ତନବାଦର କାରଣ) ନାମକ ଏକ ପୁସ୍ତକର ପ୍ରଣୟନ କରିଥିଲେ ଏବଂ ଏହା ବିଜ୍ଞାନ ଜଗତରେ ବିଶେଷ ଭାବରେ ଆଦୃତ ହୋଇଥିଲା । ହାଲ୍‌ଡ୍ରେନ୍ ଡ଼ାରଉଇନ ବାଦକୁ ସମର୍ଥନ କରୁଥିଲେ କିନ୍ତୁ ଡ଼ାରଉଇନବାଦକୁ ପର୍ଯ୍ୟବସିତ କରି ସାମାଜିକ ବିପ୍ଳବ କରିବାକୁ ମତଦେଉଥିବା ଜନନାୟକଙ୍କୁ ସେ ସମର୍ଥନ କରୁନଥିଲେ । ସେ କହୁଥିଲେ ଯେ ଜୀବନ ରକ୍ଷଣାର୍ଥେ ଜୀବଜଗତର ପ୍ରାଣୀ ଓ ଉଦ୍ଭିଦମାନଙ୍କ ମଧ୍ୟରେ ନିରନ୍ତର ସଂଗ୍ରାମ ଲାଗିରହିଅଛି ଏବଂ ଜୀବମାନଙ୍କର ପ୍ରଜନନ କରିବାର କ୍ଷମତା ଉପରେ ଭିତ୍ତି କରି ଯେଉଁ ଜୀବ ସବୁ ଦୃଷ୍ଟିରୁ ଉପଯୁକ୍ତ ସେ କେବଳ ବଞ୍ଚିରହୁଛି । ଏହା ଜୈବିକ ଉପଯୁକ୍ତତାକୁ ବୁଝାଉଛି । ତେଣୁ ଏହାକୁ ବିଚାରକରି ସାମାଜିକ ଓ ଅର୍ଥନୈତିକ ବିପ୍ଳବ ଆରମ୍ଭ କଲେ ସାମାଜିକ ସ୍ତରରେ ପ୍ରତିଯୋଗୀତା ଆରମ୍ଭ ହୋଇ ଅଶାନ୍ତ ଓ ଅନ୍ୟାୟର ବାତାବରଣ ସୃଷ୍ଟି ହେବ ।



# ବିଜ୍ଞାନର ପ୍ରସାରପାଇଁ ହାଲ୍‌ଡ଼େନ୍‌ଙ୍କର ଅବଦାନ

ବିଂଶ ଶତାବ୍ଦୀର ବିଶିଷ୍ଟ ବୈଜ୍ଞାନିକ ମାନଙ୍କ ମଧ୍ୟରେ ପ୍ରଫେସର ହାଲ୍‌ଡ଼େନ୍ ଅନ୍ୟତମ। ସେ ବିଜ୍ଞାନ ଗବେଷଣା ପାଇଁ ଲୋକମାନଙ୍କ ମଧ୍ୟରେ ଯେତିକି ପରିଚିତ ତାଙ୍କର ଲୋକପ୍ରିୟ ବିଜ୍ଞାନ, ଗଳ୍ପ, ପ୍ରବନ୍ଧ ଓ କବିତା ପାଇଁ ତାଠାରୁ ବହୁଗୁଣରେ ସମ୍ମାନିତ। ସେ ବୈଜ୍ଞାନିକ ଗବେଷଣାରେ ମନୋନିବେଶ କରିବା ସଙ୍ଗେ ସଙ୍ଗେ ବ୍ୟାବହାରିକ ବିଜ୍ଞାନ ଓ ମୌଳିକ ବିଜ୍ଞାନର କିଭଳି ପ୍ରସାର ହୋଇପାରିବ ସେଥିପ୍ରତି ବିଶେଷ ଧ୍ୟାନ ଦେଇଥିଲେ। ତାଙ୍କର ହୃଦବୋଧ ହୋଇଥିଲା ଯେ ମାନବ ସମାଜର ଅର୍ଥନୈତିକ ଓ ସାମାଜିକ ଉତ୍‌ଥାନ ପତନର ମୂଳମନ୍ତ୍ର ହେଉଛି ବିଜ୍ଞାନ ଏବଂ ବିଜ୍ଞାନର ପ୍ରଚାର ଓ ପ୍ରସାର ଦ୍ୱାରା ମାନବ ସମାଜ ମଧ୍ୟରେ ବ୍ୟାପି ଯାଇଥିବା ଅନେକଗୁଡ଼ିଏ କୁ ସଂସ୍କାର, ଅନ୍ଧ ବିଶ୍ୱାସ ଓ ଭ୍ରମଧାରଣାକୁ ମୂଳୋତ୍ପାଟନ କରି ଏକ ନୂତନ ଚେତନାର ଜାଗରଣ କ.ରାଯାଇପାରିବ।

ସେ ନିଜର ଚିନ୍ତାଧାରାକୁ କାର୍ଯ୍ୟକାରୀ କରିବା ପାଇଁ ନିଜର କେତେକ ସହକର୍ମୀ ବୈଜ୍ଞାନିକମାନଙ୍କ ସହ ଆଲୋଚନା କରିଥିଲେ ଏବଂ ବ୍ରିଟେନର ଗୋଟିଏ ବିଶିଷ୍ଟ ସମ୍ବାଦପତ୍ର ସହ ବିଜ୍ଞାନ ବିଷୟରେ ପ୍ରତି ସପ୍ତାହରେ ଏକ ସମ୍ବାଦ ପ୍ରକାଶ କରିବା ପାଇଁ ଅନୁରୋଧ କରିଥିଲେ। ମାତ୍ର ତାଙ୍କର ଦୁର୍ଭାଗ୍ୟକୁ ସେହି ସମ୍ବାଦପତ୍ର ତାଙ୍କୁ ବିଜ୍ଞାନ ସମ୍ପର୍କରେ ସମ୍ବାଦ ଛାପିବାକୁ ମନାକରି ଦେଇଥିଲା। ପ୍ରଫେସର ହାଲ୍‌ଡ଼େନ୍ ଅତ୍ୟନ୍ତ ଦୁଃଖ ପ୍ରକାଶ କରିଥିଲେ। ପରବର୍ତ୍ତୀକାଳରେ ତାଙ୍କର ବିଜ୍ଞାନ ପ୍ରବନ୍ଧ ଉପରେ ଆଧାରିତ "ସାଇନସ୍ ଆଣ୍ଡ ଏଭ୍ରିଡ଼େଲାଇଫ" (ବିଜ୍ଞାନ ଓ ଦୈନନ୍ଦିନର ଜୀବନ) ପୁସ୍ତକରେ ଏହି ଘଟଣା ସଂପର୍କରେ ବର୍ଣ୍ଣନା କରି ଲେଖିଥିଲେ "ଅନେକ ବୈଜ୍ଞାନିକ ଓ ପ୍ରକାଶକ ମତବ୍ୟକ୍ତ କରନ୍ତି ଯେ ଆଧୁନିକ ବିଜ୍ଞାନକୁ କେବଳ ବଡ଼ ବଡ଼ ପୁସ୍ତକ ଆକାରରେ ପ୍ରକାଶ କରାଯାଇପାରିବ। ବିଜ୍ଞାନ ସମ୍ବନ୍ଧରେ ଛୋଟ ଛୋଟ ପ୍ରବନ୍ଧ ବା ଗଳ୍ପ ଲେଖିବା ଏକାନ୍ତ ମୂଲ୍ୟହୀନ ଅଟେ। ମୁଁ ସେମାନଙ୍କ

ସହ ଆଦୌ ସହମତ ନୁହେଁ। ଏକଥା ସତ ଯେ ଜୈବରସାୟନ, ଗଣିତ ଶାସ୍ତ୍ର ଏବଂ ବିଜ୍ଞାନର ଯେଉଁ ବିଭାଗରେ ଉଚ୍ଚ ସ୍ତରର ଗଣିତର ପ୍ରୟୋଗ ହୋଇଛି ସେଭଳି ବିଜ୍ଞାନକୁ ସରଳ ଭାବରେ ଲେଖାଯାଇପାରିବ ନାହିଁ। ମାତ୍ର ଅନ୍ୟ ସମସ୍ତ ବିଷୟକୁ ଲୋକ ବୁଝିଲା ଭଳି ଭାଷାରେ ଲେଖାଯାଇପାରିବ। ସାଧାରଣ ଲୋକମାନେ ବିଜ୍ଞାନ ସମ୍ବନ୍ଧରେ ବିଶେଷ ଜ୍ଞାନ ଆହରଣ କରିବା ଉଚିତ୍ କାରଣ ଏହା ତାଙ୍କର ଦୈନନ୍ଦିନ ଜୀବନକୁ ପ୍ରଭାବିତ କରୁଛି।

ଉନବିଂଶ ଶତାବ୍ଦୀରେ କେତେଜଣ ପ୍ରସିଦ୍ଧ ବୈଜ୍ଞାନିକ ସମ୍ବାଦପତ୍ର ମାନଙ୍କରେ ବିଜ୍ଞାନ ସମ୍ବନ୍ଧୀୟ ପ୍ରବନ୍ଧ ଓ ସମାଚାର ଲେଖୁଥିଲେ। ମାତ୍ର କାଳକ୍ରମେ ତାହା ବନ୍ଦ ହୋଇ ଯାଇଥିଲା। କାରଣ ସମ୍ବାଦପତ୍ରର ସଂପାଦକମାନେ ଚିନ୍ତା କରିଥିଲେ ଯେ ସମ୍ବାଦପତ୍ରର ପାଠକମାନେ ବିଜ୍ଞାନ ସମ୍ବନ୍ଧରେ ଜାଣିବାକୁ ଆଦୌ ଆଗ୍ରହୀ ନୁହଁନ୍ତି।

ଏହି ଘଟଣାର କିଛି ବର୍ଷ ପରେ ପ୍ରଫେସର ହାଲ୍‌ଡ଼େନ୍ ବ୍ରିଟେନର ସମ୍ବାଦପତ୍ର "ଡ଼େଲି ୱାରକର"ର ସମ୍ପାଦକୀୟ ମଣ୍ଡଳୀରେ ଜଣେ ସଦସ୍ୟ ଭାବେ ଯୋଗ ଦେଇଥିଲେ ଏବଂ ତାଙ୍କର ପ୍ରରୋଚନାରେ ଏହି ସମ୍ବାଦପତ୍ରରେ ପ୍ରତି ଗୁରୁବାର ଦିନ ତାଙ୍କର ବିଜ୍ଞାନ ସମ୍ବନ୍ଧୀୟ ଲେଖା ପ୍ରକାଶ ପାଇବାକୁ ଆରମ୍ଭ କରିଥିଲା। କାଳକ୍ରମେ ଡ଼େଲିୱାରକର ସମ୍ବାଦପତ୍ରର ଗୁରୁବାର ସଂସ୍କରଣ ଅନ୍ୟ ସଂସ୍କରଣଠାରୁ ଅଧିକ ଲୋକପ୍ରିୟ ହୋଇଯାଇଥିଲା। ଏହାଦ୍ୱାରେ ବିଜ୍ଞାନ ସଂପର୍କୀୟ ଲେଖା ପ୍ରକାଶ ବିଷୟରେ ସଂପାଦକମାନଙ୍କର ଭ୍ରମ ଧାରଣା ଦୂର ହୋଇଯାଇଥିଲା।

ପ୍ରଫେସର ହାଲ୍‌ଡ଼େନ୍ ବିଜ୍ଞାନର ପ୍ରଚାର ପାଇଁ ଏକ ନୂତନ ଦିଗନ୍ତର ସୃଷ୍ଟି କରିଥିଲେ। ସେ ବ୍ରିଟେନରେ ଥିଲା ସମୟରେ ଲୋକପ୍ରିୟ ବିଜ୍ଞାନ ରଚନା ପାଇଁ ଏତେ ଲୋକପ୍ରିୟ ହୋଇଯାଇଥିଲେ ଯେ ଅଧିକାଂଶ ସମ୍ବାଦପତ୍ର ତାଙ୍କୁ ସେମାନଙ୍କର ସମ୍ବାଦପତ୍ର ପାଇଁ ବିଜ୍ଞାନ ସମ୍ପର୍କୀୟ ପ୍ରବନ୍ଧ, ଗଳ୍ପ, କବିତା ଇତ୍ୟାଦି ଲେଖିବାକୁ ଅନୁରୋଧ କରୁଥିଲେ। ଏହା ଫଳରେ ସେ ନିଜର ଜୀବନ କାଳ ମଧ୍ୟରେ ହଜାର ହଜାର ସଂଖ୍ୟକ ଲୋକପ୍ରିୟ ବିଜ୍ଞାନ ପ୍ରବନ୍ଧ ଓ ଗଳ୍ପ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରି ଲୋକମାନଙ୍କ ମନରେ ବିଜ୍ଞାନ ସମ୍ପର୍କରେ ସମ୍ୟକ ଧାରଣା ଦେବାକୁ ସକ୍ଷମ ହୋଇଥିଲେ। ତାଙ୍କର ବିଜ୍ଞାନ ସମ୍ପର୍କୀୟ ଲେଖା ବିଜ୍ଞାନର କୌଣସି ଗୋଟିଏ ବିଷୟ ମଧ୍ୟରେ

ସୀମିତ ନରହି ବିଜ୍ଞାନର ବିଭିନ୍ନ ବିଭାଗ; ଯଥା:— ଜ୍ୟୋତିଷ ଶାସ୍ତ୍ର, ଜୀବ ବିଜ୍ଞାନ, ଭୂତତ୍ତ୍ୱ ବିଜ୍ଞାନ, ଭେଷଜ ବିଜ୍ଞାନ, ପରିସଂଖ୍ୟାନ ବିଜ୍ଞାନ, ରସାୟନ ବିଜ୍ଞାନ, ନୃତତ୍ତ୍ୱ ଶାସ୍ତ୍ର, ପଦାର୍ଥ ବିଜ୍ଞାନ ଇତ୍ୟାଦିଉପରେ ପର୍ଯ୍ୟବଶିତ ଥିଲା । ଏହି ଲେଖାଗୁଡ଼ିକ ବ୍ରିଟେନର ବିଶିଷ୍ଟ ସମ୍ବାଦପତ୍ର ଓ ପତ୍ରିକା ସେଣ୍ଟ ଲୁଇସ୍ ପୋଷ୍ଟ, ଡ଼ିସପାଚ, ସଟର ଡ଼େ ଇଭିନିଙ୍ଗ ପୋଷ୍ଟ, ଆଟଲାଣ୍ଟିକ ମନ୍ଥଲି, ମାଞ୍ଚେଷ୍ଟର ଗାର୍ଡ଼ିଅନ, ଡ଼େଲି ମେଲ୍, ଇଭିନିଙ୍ଗ ଷ୍ଟାଣ୍ଡାର୍ଡ଼, ଡ଼େଲି ୱାରକର, ନିଉ ଷ୍ଟେଟସମ୍ୟାନ, ରେସନାଲିଷ୍ଟ ଆନୁଆଲ ଇତ୍ୟାଦିରେ ପ୍ରକାଶିତ ହୋଇଥିଲା ।

ସେ ଭାରତରେ ରହୁଥିବା ସମୟରେ ବିଦେଶରେ ଏହିଁ ପତ୍ର ପତ୍ରିକାଗୁଡ଼ିକ ସହିତ ଭାରତୀୟ ପତ୍ର ପତ୍ରିକା ହିନ୍ଦୁ, ଇଣ୍ଡିଆନ ଏକସ୍‌ପ୍ରେସ, ଅମୃତ ବଜାର ପତ୍ରିକା, ଇଲ୍ୟୁଷ୍ଟ୍ରେଟେଡ଼ ଉଇକିଲି ଇତ୍ୟାଦିକୁ ମଧ୍ୟ ବିଜ୍ଞାନ ସମ୍ବନ୍ଧୀୟ ଲେଖା ପଠାଉଥିଲେ । ତାଙ୍କର ଏହି ସବୁ ଲେଖାଗୁଡ଼ିକ ପରବର୍ତ୍ତୀ କାଳରେ ସଂକଳିତ ହୋଇ କେତେଗୁଡ଼ିଏ ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା । ସେହି ପୁସ୍ତକ ଗୁଡ଼ିକରୁ ମୁଖ୍ୟ କେତୋଟି ପୁସ୍ତକର ନାମ ହେଲା:— ପସିବଲ ୱାରଲଡ଼ସ୍, ଦି ଇନ୍ ଇକୁଆଲଟି ଅଫ୍ ମ୍ୟାନ, ହେରେଡ଼ିଟି ଆଣ୍ଡ ପଲିଟିକସ୍, ସାଇନସ୍ ଆଣ୍ଡ ଏଭ୍ରିଡ଼େ ଲାଇଫ୍, ସାଇନସ୍ ଆଡ଼ଭାନସେସ୍, ଏଭ୍ରି ଥିଙ୍ଗ ହାଜ୍ ଏ ହିଷ୍ଟୋରୀ । ଏହି ପୁସ୍ତକ ଗୁଡ଼ିକରେ ହାଲ୍‌ଡ଼େନ୍‌ଙ୍କର ବୈଜ୍ଞାନିକ୍, ସାମାଜିକ, ରାଜନୈତିକ, ଦାର୍ଶନିକ ଓ ଧର୍ମ ସମ୍ବନ୍ଧୀୟ ଚିନ୍ତାଧାରା ସରଳ ଭାବରେ ପ୍ରତିଫଳିତ ହୋଇଛି ।

ହାଲ୍‌ଡ଼େନ ବିଜ୍ଞାନକୁ ସରଳ ଭାଷାରେ ଲେଖି ଲୋକମାନଙ୍କ ପାଖରେ ପହଞ୍ଚାଇବା ସହିତ ବୈଜ୍ଞାନିକମାନଙ୍କର ନିଜସ୍ୱ ମୂଳ ବୈଜ୍ଞାନିକ ତଥ୍ୟ ଗୁଡ଼ିକର ପ୍ରକାଶ କରିବା ପାଇଁ ମଧ୍ୟ ଚେଷ୍ଟା କରିଥିଲେ । ଏଗୁଡ଼ିକ ସାଧାରଣ ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ନଥିଲା । ମାତ୍ର ଏଗୁଡ଼ିକ ଗବେଷକ ମାନଙ୍କ ପାଇଁ ଅତ୍ୟନ୍ତ ଉପାଦେୟ ଥିଲା । ସେ ମୁଖ୍ୟତଃ ଆନୁବଂଶିକୀ ଏବଂ ବିବର୍ତ୍ତନବାଦ ଉପରେ ନିଜର ଗବେଷଣା କରୁଥିଲେ । ତେଣୁ ଏହି ସଂପର୍କୀୟ ନୂତନ ବୈଜ୍ଞାନିକ ତଥ୍ୟ ପ୍ରକାଶ ପାଉଥିବା ପତ୍ରିକା ''ଦି ଜର୍ଣ୍ଣାଲ ଅଫ ଜେନେଟିକସ୍''ର ସମ୍ପାଦକ ଭାବରେ ସେ ୧୯୪୭ ମସିହାଠାରୁ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ (୧୯୬୪) କାର୍ଯ୍ୟ କରିଥିଲେ । ଏହି ପତ୍ରିକାଟି ବିଶିଷ୍ଟ ବୈଜ୍ଞାନିକ ଉଇଲିୟମ୍ ବ୍ୟାଟେସନଙ୍କ ଦ୍ୱାରା ୧୯୧୧ ମସିହାରେ ପ୍ରତିଷ୍ଠିତ ହୋଇଥିଲା । ତାଙ୍କର

ମୃତ୍ୟୁପରେ ତାଙ୍କର ସହକର୍ମୀ ପୁନେଟ୍ ଏହାକୁ ୧୯୪୬ ମସିହା ପର୍ଯ୍ୟନ୍ତ ସମ୍ପାଦିତ କରିଥିଲେ। ତାଙ୍କର ମୃତ୍ୟୁପରେ ପ୍ରଫେସର ହାଲ୍‌ଡ଼େନ୍ ଏହାର ସମ୍ପାଦନା ଦାୟିତ୍ୱ ଗ୍ରହଣ କରିଥିଲେ।

ହାଲ୍‌ଡ଼େନ୍ ଏହି ପତ୍ରିକାର ସମ୍ପାଦନା ଉପରେ ଏତେ ଗୁରୁତ୍ୱ ଦେଉଥିଲେ ଯେ ସେ ବ୍ରିଟେନ ଛାଡ଼ିଲା ବେଳକୁ ଏହାର ଦାୟିତ୍ୱ ଅନ୍ୟ କାହାକୁ ନଦେଇ ଏହାକୁ ଭାରତକୁ ନେଇ ଆସିଥିଲେ। ଏହି ସମୟରେ ସେ ଅନେକ ଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ପୁସ୍ତକର ସମୀକ୍ଷା କରି ତାଙ୍କର ଏହି ପତ୍ରିକାରେ ପ୍ରକାଶ କରିଥିଲେ। ସେ ପ୍ରତ୍ୟେକ ପୁସ୍ତକକୁ ଅଧ୍ୟୟନ କରି ସେଥିରେ ଥିବା ମହତ୍ତ୍ୱପୂର୍ଣ୍ଣ ତଥ୍ୟ ଗୁଡ଼ିକ ଉପରେ ଆଲୋକପାତ କରିବା ସହିତ ବିଭିନ୍ନ ତ୍ରୁଟି ବିଚ୍ୟୁତି ଉପରେ ମଧ୍ୟ ଆଲୋକପାତ କରିଯାଇଛନ୍ତି। ତାଙ୍କ ପତ୍ରିକାରେ ପ୍ରକାଶ ପାଇବାକୁ ଅନେକ ଗୁଡ଼ିଏ ନିବନ୍ଧ ଆସୁଥିଲା ମାତ୍ର ସେ କେବଳ ଉଚ୍ଚମାନର ନିବନ୍ଧ ଗୁଡ଼ିକୁ ତାଙ୍କର ଏହି ପତ୍ରିକାରେ ସ୍ଥାନ ଦେଉଥିଲେ। କୌଣସି ପ୍ରବନ୍ଧ ନିମ୍ନମାନର ହୋଇଥିଲେ ସେ ତାହା ପ୍ରକାଶ କରୁନଥିଲେ। ମାତ୍ର ଏହି ପଠାଇଥିବା ଗବେଷକଙ୍କୁ ସେ ଉକ୍ତ ନିବନ୍ଧରେ ଥିବା ଦୋଷ ତ୍ରୁଟିର ସମ୍ପୂର୍ଣ୍ଣ ବିବରଣୀ ଦେଇ ତାହା କିପରି ଉଚ୍ଚମାନର ହୋଇପାରିବ ସେ ବିଷୟରେ ନିଜର ମତାମତ ଜଣାଇ ଦେଉଥିଲେ। ଏହି ଗୁଣ ଲାଗି ବୈଜ୍ଞାନିକମାନେ ତାଙ୍କର ଉଚ୍ଚ ପ୍ରଶଂସା କରୁଥିଲେ ଏବଂ ନିଜେ ପ୍ରକାଶ କରିଥିବା ପୁସ୍ତକ ଓ ନିବନ୍ଧର ସମୀକ୍ଷା କରିବା ପାଇଁ ପ୍ରଫେସର ହାଲ୍‌ଡ଼େନ୍‌ଙ୍କୁ ଅନୁରୋଧ କରୁଥିଲେ।

"ଜର୍ଣ୍ଣାଲ ଅଫ୍ ଜେନେଟିକସ୍" ବ୍ୟତୀତ ସେ ଅନ୍ୟ ଏକ ବୈଜ୍ଞାନିକ ପତ୍ରିକା "ଆନାଲସ ଅଫ୍ ହ୍ୟୁମାନ ଜେନେଟିକସ୍"ର ସମ୍ପାଦନାରେ ସାହାଯ୍ୟ କରିଥିଲେ। ଏହି ଜର୍ଣ୍ଣାଲର ସମ୍ପାଦକ ଭାବରେ ସେ କାର୍ଯ୍ୟ କରିନଥିଲେ ମଧ୍ୟ ଏହାର ସମ୍ପାଦକ ମଣ୍ଡଳୀରେ ଉପଦେଷ୍ଟା ଭାବରେ ଅନେକ ବର୍ଷ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ଏବଂ ଏହି ପତ୍ରିକାର ପ୍ରତିଷ୍ଠା କରିବା ପାଇଁ ସେ ବହୁତ ସାହାଯ୍ୟ ପ୍ରଦାନ କରିଥିଲେ। ଏହି ପତ୍ରିକା କାଳକ୍ରମେ ଆର୍ନ୍ତଜାତୀୟ ସ୍ତରରେ ଏକ ପ୍ରତିଷ୍ଠିତ ପତ୍ରିକା ହିସାବରେ ପରିଗଣିତ ହୋଇଥିଲା।

ହାଲ୍‌ଡ଼େନ୍ ଜଣେ ସୁଲେଖକ ଥିଲେ। ସେ ତାଙ୍କର କର୍ମମୟ ଜୀବନର ଆରମ୍ଭରୁ ଲେଖାପ୍ରତି ବିଶେଷ ଗୁରୁତ୍ୱ ପ୍ରଦାନ କରୁଥିଲେ। ସେ ତାଙ୍କର ଜୀବନ କାଳ ମଧ୍ୟରେ ୨୪ଟି ଉନ୍ନତ ମାନର ପୁସ୍ତକ ରଚନା କରି ବିଜ୍ଞାନ

ଜଗତକୁ ଚମତ୍କୃତ କରି ଦେଇଥିଲେ । ଏଥି ସହିତ ଚାରିଶହରୁ ଉର୍ଦ୍ଧ୍ୱ ଉଚ୍ଚମାନର ମୂଳ ବୈଜ୍ଞାନିକ ନିବନ୍ଧ ବିଭିନ୍ନ ଆର୍ନ୍ତଜାତୀୟ ବିଜ୍ଞାନ ପତ୍ରିକା ଗୁଡ଼ିକରେ ପ୍ରକାଶ କରିଥିଲେ । ଡ଼େଇଡ଼ାଲସ, ଏନଜାଇମସ, ଦି କଜେସ ଅଫ୍ ଇଭଲ୍ୟୁସନ, ଇନଇକୁଆଲିଟି ଅଫ୍ ମ୍ୟାନ୍, ଫ୍ୟାକଟସ୍ ଆଣ୍ଡ ଫେଥ, ଦି ଆଉଟଲୁକ୍ ଅଫ୍ ସାଇନସ ଇତ୍ୟାଦି ପୁସ୍ତକ ଗୁଡ଼ିକ ତାଙ୍କର ବୈଜ୍ଞାନିକ ଚିନ୍ତାଧାରାକୁ ସମ୍ପୂର୍ଣ୍ଣ ଭାବରେ ପ୍ରତିଫଳିତ କରିପାରିଛି ।

ବୈଜ୍ଞାନିକ ହାଲ୍‌ଡ଼େନ୍ ଯେ କେବଳ ବୈଜ୍ଞାନିକ ପ୍ରବନ୍ଧ, ଉପନ୍ୟାସ ଓ ଗଳ୍ପ ଲେଖୁଥିଲେ ତା ନୁହେଁ, ସେ କବିତା ମାଧ୍ୟମରେ ମଧ୍ୟ ନିଜର ବୈଜ୍ଞାନିକ ଚିନ୍ତାଧାରାର ପରିପ୍ରକାଶ କରିପାରୁଥିଲେ । ତାଙ୍କର ଏହି କବିତାଗୁଡ଼ିକ ବିଭିନ୍ନ ସମ୍ବାଦପତ୍ର ଓ ବୈଜ୍ଞାନିକ ପତ୍ର ପତ୍ରିକାରେ ପ୍ରକାଶିତ ହୋଇ ଉଚ୍ଚ ପ୍ରଶଂସିତ ହୋଇ ପାରିଥିଲା । ବିଶେଷ କରି ସେ ବ୍ରାଇଟର ବାଇଓ କେମିଷ୍ଟ୍ରି ପତ୍ରିକାରେ ପ୍ରତିବର୍ଷ ଅନେକଗୁଡ଼ିଏ ବୈଜ୍ଞାନିକ ଚିନ୍ତାଧାରା ଉପରେ ପର୍ଯ୍ୟବଶିତ କବିତା ପ୍ରକାଶ କରୁଥିଲେ । ୧୯୬୩ ମସିହାରେ ତାଙ୍କ ଦେହରେ ପ୍ରଥମ କରି କର୍କଟ ରୋଗର ଲକ୍ଷଣ ପ୍ରକାଶ ପାଉଥିଲା । କର୍କଟ ରୋଗ ସମ୍ପର୍କରେ ନିଜର ମନୋଭାବ ପ୍ରକାଶ କରିବାକୁ ଯାଇ ସେ ପ୍ରସିଦ୍ଧ ସମ୍ବାଦପତ୍ର ନିଉଷ୍ଟେଟସମ୍ୟାନରେ "କ୍ୟାନସର ଇଜ୍ ଏ ଫନି ଥିଙ୍ଗ" ଶୀର୍ଷକ ତାଙ୍କର ଶେଷ କବିତା ପ୍ରକାଶ କରିଥିଲେ ।

ବୈଜ୍ଞାନିକ ହାଲ୍‌ଡ଼େନ୍ ଜଣେ ସୁବକ୍ତା ଥିଲେ । ତାଙ୍କର ଦୀର୍ଘକାୟ ଚେହେରା ଓ ପାରମ୍ପରିକ ପୋଷାକ ପରିଚ୍ଛଦ ଯୋଗୁଁ ସେ ସଭା ସମିତି ମାନଙ୍କରେ ସ୍ପଷ୍ଟ ଭାବରେ ବାରି ହୋଇ ଯାଉଥିଲେ । କୌଣସି ସଭା ସମିତିରେ ବକ୍ତୃତା ଦେଲାବେଳେ ସେ ମାଇକ୍ରୋଫୋନ୍ ବ୍ୟବହାରକୁ ପସନ୍ଦ କରୁନଥିଲେ । ଉଚ୍ଚ ସ୍ୱରରେ ଧୀର ଭାବରେ ନିଜର ବକ୍ତବ୍ୟକୁ ଶ୍ରୋତାମାନଙ୍କ ସମ୍ମୁଖରେ ଉପସ୍ଥାପନା କରୁଥିଲେ । ସେ ନିଜର ପ୍ରଖର ସ୍ମରଣ ଶକ୍ତି ଓ ପ୍ରତ୍ୟେକ ବିଷୟରେ ପାରଙ୍ଗମତା ଯୋଗୁଁ ଯେ କୌଣସି ବିଜ୍ଞାନର ବିଷୟକୁ ସୁନ୍ଦର ଭାବରେ ଶ୍ରୋତାମାନଙ୍କୁ ବୁଝାଇ ପାରୁଥିଲେ । ତତ୍‌କାଳୀନ ବିଶିଷ୍ଟ ବ୍ୟକ୍ତି ଏଚ.ଜି.ୱେଲସ ଓ ବାର୍ଣ୍ଣାଡ଼ ସ ଙ୍କ ସହିତ ସେ ରେଡ଼ିଓର ଆଲୋଚନା ଚକ୍ରରେ ମଧ୍ୟ ଭାଗନେଉଥିଲେ । ଏତଦ୍ ବ୍ୟତୀତ ବିଭିନ୍ନ ବିଶ୍ୱବିଦ୍ୟାଳୟ ଗବେଷଣାଗାର ଏବଂ ସରକାରଙ୍କ ଦ୍ୱାରା ଆମନ୍ତ୍ରିତ ହୋଇ ସେ ଅନେକଗୁଡ଼ିଏ

ବିଜ୍ଞାନ ସମ୍ବନ୍ଧୀୟ ସଭା, ସମିତି ଓ ଆଲୋଚନା ଚକ୍ର ମାନଙ୍କରେ ଅଭିଭାଷଣ ପ୍ରଦାନ କରିଥିଲେ। ଏହି ଅଭିଭାଷଣ ଗୁଡ଼ିକରେ ସେ ସରଳ ଭାବରେ ନିଜର ଚିନ୍ତାଧାରାକୁ ପରିପ୍ରକାଶ କରିବା ସଙ୍ଗେ ସଙ୍ଗେ ବିଜ୍ଞାନର ଉପଯୋଗୀତା ଓ ବୈଜ୍ଞାନିକ ଗବେଷଣାକୁ କିଭଳି ଭାବରେ ବାସ୍ତବାଭିମୁଖୀ ଓ ଜନକଲ୍ୟାଣକାରୀ କରାଯାଇପାରିବ ସେକଥା ବୈଜ୍ଞାନିକମାନଙ୍କୁ ଦର୍ଶାଇ ଦେଉଥିଲେ। ଭାରତରେ ଥିବା ସମୟରେ ଭାରତ ସରକାର ତାଙ୍କୁ ପଟେଲ ସ୍ମୃତି ବକ୍ତୃତାମାଳା ଦେବାପାଇଁ ଅନୁରୋଧ କରିଥିଲେ ଏବଂ ଦିଲ୍ଲୀ ବେତାର କେନ୍ଦ୍ରରୁ ତାଙ୍କର ଏହି ବକ୍ତୃତାଗୁଡ଼ିକୁ ପ୍ରଚାର କରାଯାଇଥିଲା। ପରବର୍ତ୍ତୀକାଳରେ ତାଙ୍କର ଏହି ଓଜସ୍ୱିନୀ ବକ୍ତୃତା ଗୁଡ଼ିକୁ "ଦି ଇଉନିଟ ଆଣ୍ଡ ଡ଼ାଇଭରସିଟି ଅଫ୍ ଲାଇଫ୍" ନାମକ ପୁସ୍ତକରେ ସଂକଳନ କରାଯାଇଥିଲା।



ଆନୁବଂଶିକ ବିଜ୍ଞାନର ପ୍ରଫେସର

ଉଇଲିୟମ ବ୍ୟାଟେସନ୍

ପ୍ରଫେସର ହାଲଡ଼େନ୍‌ଙ୍କର ବିଜ୍ଞାନର ପ୍ରସାର ପାଇଁ ଅବଦାନ ବିଜ୍ଞାନ ଜଗତରେ ଅତୁଳନୀୟ ଅଟେ। ନିଜ ଜୀବନର ଶେଷ ପର୍ଯ୍ୟନ୍ତ ସେ ବିଜ୍ଞାନକୁ ଲୋକପ୍ରିୟ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଯାଇଛନ୍ତି ଏବଂ ତାଙ୍କର ଏହି ଅବଦାନ ତାଙ୍କୁ ଚିରସ୍ମରଣୀୟ କରି ରଖିବ।

# ୧୨

# ଦାର୍ଶନିକ ହାଲ୍‌ଡେ଼ନ୍

ପରାଧୀନତା, ଦାରିଦ୍ର୍ୟ, ଶୋଷଣ ଏବଂ ନୈରାଶ୍ୟ ଯେତେବେଳେ ଭାରତୀୟ ଜୀବନଧାରାକୁ ସମ୍ପୂର୍ଣ୍ଣଭାବରେ ବିପର୍ଯ୍ୟସ୍ତ କରିଦେଇଥିଲା ଏହିପରି ସମୟରେ ରାଜନୈତିକ କ୍ଷେତ୍ରରେ ଗାନ୍ଧିଙ୍କର ଆବିର୍ଭାବ ହୋଇଥିଲା । ଗାନ୍ଧିଜୀ ଭାରତୀୟ ଜନତାର ଏକ ସାର୍ଥକ ପ୍ରତିନିଧି ଥିଲେ । ଭାରତୀୟମାନଙ୍କୁ ସେମାନଙ୍କର ଦୟନୀୟ ଅବସ୍ଥା ସମ୍ପର୍କରେ ସଚେତନ କରାଇ ସେମାନଙ୍କର ଗୌରବ ଫେରାଇ ଆଣିବାକୁ ସେ ଦୃଢ଼ ପ୍ରତିଜ୍ଞ ଥିଲେ । ୧୯୨୯ ମସିହା ଲାହୋର କଂଗ୍ରେସ ଅଧିବେଶନରେ ଦେଶକୁ ସ୍ୱାଧୀନ କରିବା ପାଇଁ ନିଷ୍ପତ୍ତି ନିଆଯାଇଥିଲା ଏବଂ ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ । ସେ ୧୯୩୦ ମସିହା ମାର୍ଚ୍ଚ ୧୧ ତାରିଖ ଦିନ ଲୁଣମରା ଆଇନକୁ ଅମାନ୍ୟ କରିବା ଉଦ୍ଦେଶ୍ୟରେ ସାବରମତି ଆଶ୍ରମଠାରୁ ଦାଣ୍ଡି ପର୍ଯ୍ୟନ୍ତ ଦ୍ୱବିଶ ମାଇଲ ରାସ୍ତା ପଦଯାତ୍ରା କରିଥିଲେ । ଲବଣ ସତ୍ୟାଗ୍ରହରେ ଯୋଗ ଦେବାପାଇଁ ଲକ୍ଷ ଲକ୍ଷ ଜନତା ତାଙ୍କ ସହ ଯୋଗ ଦେଇଥିଲେ । ଗାନ୍ଧିଜୀ ମୁଠାଏ ଲୁଣ ହାତରେ ଉଠାଇ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ ଏବଂ ଦୃଢ଼ କଣ୍ଠରେ ଘୋଷଣା କରିଥିଲେ ଯେ ଏହି କଳା ଆଇନ୍‌କୁ ବ୍ରିଟିଶ ସରକାର ପ୍ରତ୍ୟାହାର ନକଲା ପର୍ଯ୍ୟନ୍ତ ସେ ଆଶ୍ରମକୁ ଫେରିବେ ନାହିଁ । ଗାନ୍ଧିଜୀଙ୍କର ଏହି ଆହ୍ୱାନ ପରାଧୀନ ଓ ନିଷ୍ପେସିତ ଭାରତୀୟ ଜନତା ମନରେ ଏକ ନୂତନ ସ୍ପନ୍ଦନ ଆଣିଦେଲା । ବ୍ରିଟିଶ ସରକାର ଏହାକୁ ଦୃଢ଼ ହସ୍ତରେ ଦମନ କରିବାକୁ ଆରମ୍ଭ କଲେ । ମାତ୍ର ଏହା ଏତେ ପ୍ରଭାବଶାଳୀ ସତ୍ୟାଗ୍ରହ ଥିଲା ଯେ ବ୍ରିଟିଶ ସରକାର ଭାରତୀୟ କଂଗ୍ରେସ ନେତାମାନଙ୍କ ସହ ମିତ୍ରଭାବାପନ୍ନ ଆଚରଣ କରିବାକୁ ବାଧ୍ୟ ହୋଇଥିଲେ ଏବଂ ଦ୍ୱିତୀୟ ଗୋଲଟେବୁଲ୍ ବୈଠକ ପାଇଁ ଗାନ୍ଧିଜୀଙ୍କୁ ନିମନ୍ତ୍ରଣ କରାଯାଇଥିଲା ।

ବ୍ରିଟିଶ ସରକାରଙ୍କର ଏହି ଅତ୍ୟାଚାର ଓ ଦମନମୂଳକ ନୀତିକୁ ଅନେକ ବ୍ରିଟିଶବାସୀ ନାପସନ୍ଦ କରିଥିଲେ । ପ୍ରଫେସର ହାଲ୍‌ଡେ଼ନ୍ ଏହାକୁ ବିରୋଧ କରି ଡେ଼ଲି ୱାରକର୍ ସମ୍ବାଦ ପତ୍ରରେ ସମାଲୋଚନା ମୂଳକ ପ୍ରବନ୍ଧଟିଏ ପ୍ରକାଶ କରିଥିଲେ । ସେତେବେଳେ ସେ ବ୍ରିଟିଶ୍ କମ୍ୟୁନିଷ୍ଟ ଦଳର ଜଣେ

ବିଶିଷ୍ଟ ନେତା ଭାବରେ ପରିଗଣିତ ହେଉଥିଲେ। ପ୍ରଫେସର ହାଲ୍‌ଡ଼େନ୍ କହିଥିଲେ ଯେ ''ବ୍ରିଟେନ ଏକ ଶୀତ ପ୍ରଧାନ ଦେଶ ହୋଇଥିବାରୁ ଖାଦ୍ୟ ପଦାର୍ଥରେ ଲୁଣର ବିଶେଷ ଆବଶ୍ୟକତା ପଡ଼େ ନାହିଁ। ମାତ୍ର ଗ୍ରୀଷ୍ମ ମଣ୍ଡଳୀୟ ଦେଶ ଯେଉଁଠି ଦେହରୁ ବହୁପରିମାଣରେ ଝାଳର ନିର୍ଗମ ହୁଏ ସେଠାରେ ଶରୀର ପାଇଁ ଲୁଣର ଜୈବିକ ଆବଶ୍ୟକତା ରହିଛି। ତେଣୁ ଗାନ୍ଧିଜୀଙ୍କ ଲବଣ ସତ୍ୟାଗ୍ରହ ଜୈବିକ ଦୃଷ୍ଟିକୋଣରୁ ମଧ୍ୟ ଠିକ୍ ଅଟେ।''

ପ୍ରଫେସର ହାଲ୍‌ଡ଼େନ୍ ଜଣେ ମହାନ ଲୋକହିତୈଷୀ ଦାର୍ଶନିକ ଥିଲେ। ସେ ସାମ୍ରାଜ୍ୟବାଦ ଓ ଶୋଷଣକୁ ଘୃଣା କରୁଥିଲେ। ଇଂରେଜ ସରକାରଙ୍କର ଉପନିବେଶବାଦ ଓ ପରାଧୀନ ଦେଶମାନଙ୍କର ଯୁକ୍ତିଯୁକ୍ତ ଦାବି ଗୁଡ଼ିକ ଦମନମୂଳକ ନୀତିରେ ବନ୍ଦ କରିବାର ପ୍ରଚେଷ୍ଟାକୁ ସେ ବିରୋଧ କରୁଥିଲେ। ବିଶେଷ କରି ଭାରତରେ ପ୍ରଥମ ବିଶ୍ୱଯୁଦ୍ଧ ପରେ ସେ ଏକ ବର୍ଷ ରହିବା ପରେ ପରାଧୀନ ଭାରତୀୟମାନଙ୍କର ଦୁଃଖ ଦୁର୍ଦ୍ଦଶା ସମ୍ପର୍କରେ ସମ୍ପୂର୍ଣ୍ଣ ଭାବରେ ଅବଗତ ହୋଇପାରିଥିଲେ। ଏଣୁ ଗାନ୍ଧିଜୀଙ୍କ ଭଳି ଜଣେ ନେତାଙ୍କର ଏହି ଅସହଯୋଗ ଆନ୍ଦୋଳନକୁ ସେ ଦୃଢ଼ ଭାବରେ ସମର୍ଥନ ଜଣାଇ ଥିଲେ।

୧୯୫୭ ମସିହାରେ ସେ ଭାରତକୁ ଆସିବାପରେ ଗାନ୍ଧିଜୀଙ୍କର ନୀତିକୁ ଅନୁସରଣ କରିଥିଲେ। ସେ ସମ୍ପୂର୍ଣ୍ଣ ନିରାମୀଷ ଭୋଜନ କରିଥିଲେ ଏବଂ ଭାରତୀୟ ପରମ୍ପରା ଅନୁସାରେ ପୋଷାକ ପରିଧାନ କରୁଥିଲେ। ଏପରିକି ସେ ଇତାଲୀର ରୋମ ନଗରୀରେ ଭାରତୀୟ ପୋଷାକ ପରିଧାନ କରି 'ଫେଲଟ୍ରିନେଲି' ପୁରସ୍କାର ଗ୍ରହଣ କରିଥିଲେ। ସେ ବିଦେଶ ଯାତ୍ରା କଲାବେଳେ ବିଳାସପୂର୍ଣ୍ଣ ହୋଟେଲରେ ନରହି ନିଜର ଛାତ୍ରମାନଙ୍କ ସହ ନିରାଡ଼ମ୍ବର ପୂର୍ଣ୍ଣ ହୋଟେଲରେ ରହୁଥିଲେ। ଆୟୋଜକମାନେ ତାଙ୍କ ପାଇଁ ବିଳାସପୂର୍ଣ୍ଣ ହୋଟେଲରେ ରହିବା ବ୍ୟବସ୍ଥା ନକରିବା ପାଇଁ ସେ ପୂର୍ବରୁ ଅନୁରୋଧ କରି ଚିଠି ପଠାଇ ଦେଉଥିଲେ। ସରଳ ଓ ନିରାଡ଼ମ୍ବର ଜୀବନଯାପନକୁ ସେ ବେଶ୍ ପସନ୍ଦ କରୁଥିଲେ।

ଭାରତରେ ରହିବା ସମୟରେ ସେ ହିନ୍ଦୁଧର୍ମ ପ୍ରତି ଆକୃଷ୍ଟ ହୋଇ ସମ୍ପୂର୍ଣ୍ଣ ହିନ୍ଦୁ ହୋଇ ଯାଇଥିଲେ। ସେ ଜଣେ ବିଦ୍ୱାନ ବ୍ୟକ୍ତି ଥିଲେ। ଫ୍ରେଞ୍ଚ, ଜର୍ମାନ, ଗ୍ରୀକ୍, ଲାଟିନ୍ ଭାଷାରେ ତାଙ୍କର ପାଣ୍ଡିତ୍ୟ ଥିଲା। ସେ ରାମାୟଣ, ମହାଭାରତ, ବେଦ, ବେଦାନ୍ତ, ଉପନିଷଦ ସବୁକୁ ପଢ଼ି ସହଜରେ ବିଶ୍ଳେଷଣ



ଭାରତର ରାଷ୍ଟ୍ରପତି ଡକ୍ଟର ରାଧାକୃଷ୍ଣନ



ଗାନ୍ଧିଜୀଙ୍କ ଲବଣ ସତ୍ୟାଗ୍ରହ

କରିପାରୁଥିଲେ । କେବଳ ସେତିକି ନୁହେଁ କୋରାନ, ବାଇବେଲ ଇତ୍ୟାଦି ଧର୍ମଶାସ୍ତ୍ରକୁ ଅଧ୍ୟୟନ କରି ଯୁକ୍ତି ସଂଗତ ପ୍ରଶ୍ନ ମଧ୍ୟ ଉତ୍‌ଥାପନ କରିପାରୁଥିଲେ । ଜଣେ ବିଦ୍ୱାନ ବ୍ୟକ୍ତି ହିସାବରେ ସେ ସବୁ ଧର୍ମକୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ସିନ୍ଥେଟିକ ସୁପରଷ୍ଟିସନ (କୃତ୍ରିମ ଅନ୍ଧବିଶ୍ୱାସ) ଶୀର୍ଷକ ଏକ ପ୍ରବନ୍ଧରେ ସେ ଲେଖିଥିଲେ, "ଅନ୍ୟ ଲୋକମାନଙ୍କର ଧର୍ମ ବିଶ୍ୱାସକୁ ଅନ୍ଧ ବିଶ୍ୱାସର ସଂଜ୍ଞା ହିସାବରେ ନିଆ ଯାଇପାରେ । ଏହା ନିଶ୍ଚିତ ଯେ ମୁଁ ଲୋକଙ୍କର ଧର୍ମବିଶ୍ୱାସ ଉପରେ ଆଧାରିତ କେତେକ ମତ ସହ ଏକମତ ନୁହେଁ ତଥାପି ସେଥିପାଇଁ ମୁଁ ସେମାନଙ୍କୁ ନିନ୍ଦା କରିବି ନାହିଁ । କାରଣ ଧର୍ମବିଶ୍ୱାସ ଉପରେ ଆଧାରିତ କେତେ ମତ ଅସତ୍ୟ ହେଲେ ମଧ୍ୟ ସେଗୁଡ଼ିକ ପ୍ରଚଳିତ ଏକ ପରମ୍ପରାର ଅଂଶ ବିଶେଷ ଏବଂ ତା ଉପରେ ଅନେକ ବିଦ୍ୱାନ ଓ ସଭ୍ୟ ସମାଜର ବ୍ୟକ୍ତି ବିଶ୍ୱାସ କରିଥାଆନ୍ତି ।

ଭାରତର ରାଷ୍ଟ୍ରପତି ଡ଼କ୍ଟର ରାଧାକ୍ରିଷ୍ଣନଙ୍କୁ ସେ ଗଭୀର ଭକ୍ତି କରୁଥିଲେ ଏବଂ ତାଙ୍କ ଦ୍ୱାରା ଲିଖିତ ଅଧିକାଂଶ ପୁସ୍ତକକୁ ସେ ଅଧ୍ୟୟନ କରିଥିଲେ । ଡ଼କ୍ଟର ରାଧାକ୍ରିଷ୍ଣନ ଜଣେ ପ୍ରସିଦ୍ଧ ଦାର୍ଶନିକ ଥିଲେ ଏବଂ ତାଙ୍କର ଦାର୍ଶନିକ ଓ ଧର୍ମ ସମ୍ବନ୍ଧୀୟ ଚିନ୍ତାଧାରା ପ୍ରଫେସର ହାଲ୍‌ଡ଼େନ୍‌ଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା ।

ପ୍ରଫେସର ହାଲ୍‌ଡ଼େନ୍ ଜଣେ ଚିନ୍ତାଶୀଳ ବ୍ୟକ୍ତି ହିସାବରେ "ଜୀବନ" ସଂପର୍କରେ ରହସ୍ୟ ଉନ୍ମୋଚନ କରିବା ପାଇଁ ଚେଷ୍ଟା କରିଥିଲେ । ଫରାସୀ ଦାର୍ଶନିକ ଡ଼େକାଟଙ୍କର ଉକ୍ତି ଥିଲା ଯେ "ମଣିଷ ଗୋଟିଏ କଳ, ଯାହା ତା ମସ୍ତକରେ ଥିବା ଆତ୍ମା ଦ୍ୱାରା ପରିଚାଳିତ ହୁଏ ।" କେତେକ ବୈଜ୍ଞାନିକ ମଧ୍ୟ ମତ ଦିଅନ୍ତି ଯେ "ମଣିଷ ଏକ ଉଚ୍ଚକୋଟୀର ଜଟିଳ କଳ ।" ହାଲ୍‌ଡ଼େନ୍ ତାଙ୍କର ପୁସ୍ତକ "କିପିଙ୍ଗ କୁଲ୍ ଆଣ୍ଡ୍ ଅଦର୍ ଏସେଜ୍" ରେ "ଜୀବନ କଣ ?" ଶୀର୍ଷକ ଏକ ' 'ନ୍ଧରେ ଲେଖିଛନ୍ତି "ମଣିଷ ଏକ କଳ ବା ଉଚ୍ଚକୋଟୀର ଜଟିଳ କଳ ବୋଲି ଦାର୍ଶନିକ ଓ ବୈଜ୍ଞାନିକମାନେ ଯେଉଁ ମତ ଦେଇଛନ୍ତି ତାହା ଆଂଶିକ ଭାବରେ ସତ୍ୟ । ମଣିଷ ଓ ଅନ୍ୟ ଉନ୍ନତ ପ୍ରାଣୀମାନଙ୍କ ଶରୀରରେ ଯେଉଁ କ୍ଷୁଦ୍ର କ୍ଷୁଦ୍ର ଅସଂଖ୍ୟ କୋଷ ରହିଛି ସେଥିରେ ପ୍ରତ୍ୟେକଟିରେ ଜୀବନ ରହିଅଛି । ଗୋଟିଏ କୁକୁରର ମୁଣ୍ଡରେ ଏହିଭଳି ପ୍ରାୟ ପଚାଶ ଲକ୍ଷ କୋଷ ରହିଛି ଏବଂ ପ୍ରତ୍ୟେକଟି ସ୍ନାୟୁଦ୍ୱାରା

ବାହାର ଜଗତ ସହିତ ସଂପୃକ୍ତ। ଗୋଟିଏ କୁକୁରର ଆଖିର ସ୍ନାୟୁରେ ସେହିଭଳି ହଜାର ହଜାର ତନ୍ତୁ ରହିଛି ଯାହା ଟେଲିଫୋନ ତାର ଭଳି ସହଜରେ ବାର୍ତ୍ତା ପଠାଏ ଏବଂ ଗ୍ରହଣ କରେ। ଏହି କଳ କେତେ ସୂକ୍ଷ୍ମ ଓ କେତେ ଜଟିଳ, ଏହି ଉଦାହରଣରୁ ସ୍ପଷ୍ଟ ଭାବରେ ଜାଣି ହୁଏ। ମନକଥା ଚିନ୍ତାକଲେ ଶରୀର ଯେ ଗୋଟିଏ କଳ ଏହା ସମ୍ପୂର୍ଣ୍ଣ ଭୁଲ ବୋଲି ଜଣାପଡ଼େ। ମନର ଚିନ୍ତା, ଇଚ୍ଛା, ସୁଖଦୁଃଖର ଚେତନା, ଭାବପ୍ରବଣତା, ଶୁଭଅଶୁଭ ଜ୍ଞାନ ଗୋଟିଏ କଳ ଭିତରୁ କାହୁଁ ମିଳିବ ?

ତେଣୁ ଜୀବନ ଦୁଇଟି ପରସ୍ପର ବିରୋଧୀ ଉପାଦନର ସମ୍ମିଶ୍ରଣ— ଏହା ଏକ ଜଟିଳ କଳ ଓ ତା ସଙ୍ଗେ ସଙ୍ଗେ ଏକ ସୂକ୍ଷ୍ମ ଚେତନା, ବିଭିନ୍ନତା ଛାଡ଼ି ଏକତ୍ୱ ଆଡ଼କୁ ଗତି କରିବା ଯା'ର ଚିରନ୍ତନ ଧର୍ମ।''

ପ୍ରଫେସର ହାଲ୍‌ଡ଼େନ୍ ଜୀବନର ସଂଜ୍ଞା ନିରୂପଣ କରି ନୀରବ ରହି ଯାଇ ନାହାନ୍ତି। ଏକ ସମ୍ପୂର୍ଣ୍ଣ ଜୀବନଯାପନ ପାଇଁ କଣ ଆବଶ୍ୟକ ସେ ସମ୍ପର୍କରେ ମଧ ଆଲୋକପାତ କରିଯାଇଛନ୍ତି। ପ୍ରଫେସର ହାଲ୍‌ଡ଼େନ୍‌ଙ୍କ ମତରେ ପଦାର୍ଥ ହେଲା— ଖାଦ୍ୟ, ଜଳ, ବସ୍ତ୍ର ଏବଂ ବାସଗୃହ। ଏତଦ୍‌ବ୍ୟତୀତ ମଣିଷର ଆବଶ୍ୟକତାକୁ ଅତ୍ୟାବଶ୍ୟକୀୟ ଓ ବାଞ୍ଛନୀୟ ହିସାବରେ ଦୁଇଭାଗ କରାଯାଇପାରେ। ଅତ୍ୟାବଶ୍ୟକୀୟ ଉପାଦାନ ଗୁଡ଼ିକ ହେଲା— କାର୍ଯ୍ୟ, ସ୍ୱାଧୀନତା, ସ୍ୱାସ୍ଥ୍ୟ ଏବଂ ବନ୍ଧୁତା। ବାଞ୍ଛନୀୟ ଉପାଦାନ ଗୁଡ଼ିକ ହେଲା,— ଫଳଦାୟକ କାର୍ଯ୍ୟ, ସମାନତା, ଶାନ୍ତି, ନିରାପତ୍ତା ଓ ଶିକ୍ଷା। ଏହି ଉପାଦାନ ଗୁଡ଼ିକର ସଦୁପଯୋଗ କରି ନିଜ ଜୀବନକୁ ସୁଖମୟ କରିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କର ଜୀବନକୁ ମଧ ସୁଖମୟ କରିହେବ।

ମୃତ୍ୟୁ ସଂପର୍କରେ ମତପୋଷଣ କରିବାକୁ ଯାଇ ପ୍ରଫେସର ହାଲ୍‌ଡ଼େନ୍ ଲେଖିଛନ୍ତି ''ଏପର୍ଯ୍ୟନ୍ତ ଯେତୋଟି ମୃତ୍ୟୁର ପଞ୍ଜିକରଣ କରାଯାଇଛି ସେଗୁଡ଼ିକ ମଧରୁ ଦାର୍ଶନିକ ସକ୍ରେଟିସଙ୍କର ମୃତ୍ୟୁ ପ୍ରତି ମୋର ଈର୍ଷାଭାବ ଜାତହୁଏ। କାରଣ ସେ ତାଙ୍କର ନିଜର ଦୃଢ଼ ବିଶ୍ୱାସକୁ ପରିବର୍ତ୍ତନ ନକରିବା ଯୋଗୁଁ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହୋଇଥିଲେ। ସେ ଯଦି ନିଜର ବିଶ୍ୱାସ ଉପରେ କୁଠାରଘାତ କରିଥାଆନ୍ତେ ସେ ସହଜରେ ରାଜକୀୟ ସମ୍ମାନ ପ୍ରାପ୍ତ କରିପାରି ଥାଆନ୍ତେ। ମାତ୍ର ସେ ସତୁରି ବର୍ଷ ବୟସରେ ନିଜର କାର୍ଯ୍ୟକୁ ସମାପ୍ତ କରି ମୃତ୍ୟୁ ବରଣ କରିଥିଲେ। ସବୁଠାରୁ ଖୁସିର କଥା ଥିଲା ସେ ହସି ହସି ମୃତ୍ୟୁ ବରଣ କରିଥିଲେ। ତାଙ୍କର ଶେଷ ଶବ୍ଦଗୁଡ଼ିକ ଗୋଟିଏ ହସକଥା ଥିଲା।''

ପ୍ରଫେସର ହାଲ୍‌ଡ଼େନ୍ ସରଳତାକୁ ପସନ୍ଦ କରୁଥିଲେ । ବିଜ୍ଞାନର ଉପଯୋଗ କରାଯାଇ କିପରି ଜନକଲ୍ୟାଣକର କାର୍ଯ୍ୟ କରାଯାଇ ପାରିବ ସେ ସଂପର୍କରେ ସେ ସଚେତନ ଥିଲେ ମାତ୍ର ବିଜ୍ଞାନ ନାଆଁରେ ମୂଲ୍ୟବାନ ଯନ୍ତ୍ରପାତି କିଣି ଗବେଷଣାଗାରର ଶୋଭା ବର୍ଦ୍ଧନ କରିବାର ପରମ୍ପରାକୁ ପସନ୍ଦ କରୁନଥିଲେ । ଏତଦ୍‌ବ୍ୟତୀତ ବିଜ୍ଞାନର ବାର୍ଷିକ ଉତ୍ସବ, ସେମିନାର ପରିବର୍ତ୍ତେ ନିଜକୁ ଅନ୍ୟମାନଙ୍କ ଆଗରେ ଉପସ୍ଥାପନା କରିବାର ଚିନ୍ତାଧାରାକୁ ସେ ଦୃଢ଼ ବିରୋଧ କରୁଥିଲେ । ତାଙ୍କ ମତରେ ବିକାଶଶୀଳ ଦେଶଗୁଡ଼ିକ ବ୍ୟାବହାରିକ ବିଜ୍ଞାନ ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରି ସେଗୁଡ଼ିକୁ ଜନକଲ୍ୟାଣକର କାର୍ଯ୍ୟରେ କିପରି ଉପଯୋଗ କରାଯାଇପାରିବ ସେ ଦିଗରେ ଗବେଷଣା କରିବା ଉଚିତ୍ । ସଭାସମିତି ମାନଙ୍କରେ ସେ କୁଳପତି, ନିର୍ଦ୍ଦେଶକ, ବରିଷ୍ଠ ବୈଜ୍ଞାନିକମାନଙ୍କ ସହ ଆଲୋଚନା ନକରି ଯୁବ ବୈଜ୍ଞାନିକମାନଙ୍କ ସହ କଥୋପକଥନ ଛଳରେ ବୈଜ୍ଞାନିକ ଗବେଷଣା ଉପରେ ଆଲୋଚନା କରୁଥିଲେ । ତାଙ୍କ ମତରେ ଯୁବକମାନଙ୍କୁ ଉତ୍ସାହିତ ଓ ଅନୁପ୍ରାଣିତ କରିପାରିଲେ ବୈଜ୍ଞାନିକ ଗବେଷଣା ବାସ୍ତବାଭିମୁଖୀ ହୋଇପାରିବ ।

ସେ ନିଜେ ନିଜକୁ ଜଣେ କମ୍ୟୁନିଷ୍ଟ ବୋଲି ଘୋଷଣା କରିଥିଲେ ଏବଂ ଦୀର୍ଘ ଷୋଳବର୍ଷକାଳ କମ୍ୟୁନିଷ୍ଟ ଦଳ ପାଇଁ ଜଣେ ଅନୁରକ୍ତ କର୍ମୀ ହିସାବରେ କାର୍ଯ୍ୟ କରିଥିଲେ । ମାତ୍ର ଅନୁରକ୍ତ ଭାବରେ ଯେ କୌଣସି ନୀତିକୁ ଗ୍ରହଣ କରି ନେଉନଥିଲେ । ସୋଭିଏତ ବୈଜ୍ଞାନିକ ଲାଇସେଙ୍କୋଙ୍କ ଦ୍ୱାରା ଆନୁବଂଶିକୀ ବିଜ୍ଞାନର ଭ୍ରମାତ୍ମକ ବିଶ୍ଳେଷଣକୁ ନେଇ ଯେଉଁ ସମସ୍ୟାର ସୃଷ୍ଟି ହୋଇଥିଲା ସେ ତାହାକୁ ସହଜ ଭାବରେ ଗ୍ରହଣ କରିନଥିଲେ । ସେ ସୋଭିଏତ ବିଜ୍ଞାନ ଏକାଡ଼େମୀର ସଦସ୍ୟ ଥିଲେ । ମାତ୍ର ଅନ୍ଧଭାବରେ ଲାଇସେଙ୍କୋଙ୍କୁ ସମର୍ଥନ କରିନଥିଲେ । ବୈଜ୍ଞାନିକ ମୁଲର୍‌ଙ୍କ ଭଳି ସେ ସଦସ୍ୟତାରୁ ଇସ୍ତଫା ପ୍ରଦାନ କରିନଥିଲେ ମଧ୍ୟ ଆସ୍ତେ ଆସ୍ତେ ଏହି ଏକାଡ଼େମୀର କାର୍ଯ୍ୟକଳାପଠାରୁ ନିଜକୁ ଦୂରେଇ ଦେଇଥିଲେ ଏବଂ ସୋଭିଏତ ୟୁନିୟନକୁ ୧୯୪୬ ମସିହାରେ ନିମନ୍ତ୍ରିତ ହୋଇ ମଧ୍ୟ ଯିବାକୁ ପସନ୍ଦ କରିନଥିଲେ । ୧୯୫୭ ମସିହାରେ ଭାରତକୁ ଦେଶାନ୍ତର ହୋଇଯିବାପରେ ସେ ରାଜନୈତିକ କ୍ଷେତ୍ରରେ ସମ୍ପୂର୍ଣ୍ଣ ଭାବରେ ଉଦାସୀନ ହୋଇଯାଇଥିଲେ ଏବଂ ନିଜର ବିଦ୍‌ବତ୍ତାର ପରିଚୟ ଦେଇ ପାରିଥିଲେ ।

—୦—

# ୧୩
# ପରିବ୍ରାଜକ ହାଲ୍‌ଡ଼େନ୍

ପ୍ରଫେସର ହାଲ୍‌ଡ଼େନ୍ ତାଙ୍କର ଜୀବନକାଳ ମଧ୍ୟରେ ପୃଥିବୀର ଅନେକ ଦେଶ ପରିଭ୍ରମଣ କରିଥିଲେ। ବିଭିନ୍ନ ଦେଶରେ ଥିବା ବିଶ୍ୱବିଦ୍ୟାଳୟ, ଗବେଷଣାଗାର, ଐତିହାସିକ ସ୍ଥାନ, ମନ୍ଦିର ଇତ୍ୟାଦି ସେ ପରିଭ୍ରମଣ କରି ଦେଖିବା ସହିତ ସେ ଅନେକ ଯୁବ ବୈଜ୍ଞାନିକ ଓ ପ୍ରତିଷ୍ଠିତ ବୈଜ୍ଞାନିକମାନଙ୍କୁ ସାକ୍ଷାତ କରିଥିଲେ। ବିଶେଷ କରି ସେ ବୈଜ୍ଞାନିକ କାର୍ଯ୍ୟକଳାପ ପାଇଁ କିମ୍ବା କୌଣସି ବିଜ୍ଞାନ ଏକାଡ଼େମୀ ବା ବିଶ୍ୱବିଦ୍ୟାଳୟର ନିମନ୍ତ୍ରଣ କ୍ରମେ ବିଭିନ୍ନ ଦେଶ ପରିଭ୍ରମଣ କରିବାର ସୁଯୋଗ ପାଇଥିଲେ।

ସେ ଭାରତରେ ସ୍ଥାୟୀ ଭାବରେ ବସତି ସ୍ଥାପନ କରିବା ପରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (ଇଉନିଭରସିଟି ଗ୍ରାଣ୍ଟସ୍ କମିଶନ)ର ଜୀବ ବିଜ୍ଞାନ ସମ୍ବନ୍ଧୀୟ ସବ୍‌କମିଟିର ସଦସ୍ୟଭାବରେ କାର୍ଯ୍ୟ କରିଥିଲେ। ଏହି ସଦସ୍ୟ ପଦ ଯୋଗୁଁ ସେ ବିଭିନ୍ନ ବିଶ୍ୱବିଦ୍ୟାଳୟ ପରିଦର୍ଶନ କରିବାକୁ ଯାଉଥିଲେ ଏବଂ ସେଗୁଡ଼ିକର କାର୍ଯ୍ୟକଳାପ, ଶିକ୍ଷା, ଗବେଷଣା ସମ୍ପର୍କରେ ଅନୁଧ୍ୟାନ କରିବା ସହିତ ଏସବୁ କ୍ଷେତ୍ରରେ କିଭଳି ଉନ୍ନତି କରାଯାଇ ପାରିବ ସେ ସମ୍ପର୍କରେ ନିଜର ମତାମତ ପ୍ରଦାନ କରୁଥିଲେ। ସେ ପ୍ରଥମେ ବ୍ରିଟେନର ଅଧିବାସୀ ଥିଲେ। ତେଣୁ ଜଣେ ବିଦେଶୀ ପର୍ଯ୍ୟଟକ ହିସାବରେ ସେ ଭାରତର ବିଭିନ୍ନ ପ୍ରକାର ଉଦ୍ଭିଦ, ପ୍ରାଣୀ ଓ ବିଭିନ୍ନ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଗୁଡ଼ିକୁ ଦେଖିବା ସଙ୍ଗେ ସଙ୍ଗେ ନିଜର ଅନୁଭୂତି ଉପରେ ପର୍ଯ୍ୟବଶିତ କରି ସୁନ୍ଦର ମତାମତ ପ୍ରଦର୍ଶନ କରିଥିଲେ।

ସେ ଭାରତର ବମ୍ବେ ନଗରୀ ୧୯୬୦ ମସିହାରେ ବିଜ୍ଞାନ କଂଗ୍ରେସ ଅଧିବେଶନ ସମୟରେ ପରିଭ୍ରମଣ କରିଥିଲେ ଏବଂ ଏହାପରେ ଅଜନ୍ତା ଓ ଏଲୋରାର ଗୁମ୍ଫାଗୁଡ଼ିକ ଦେଖିଥିଲେ। ଏତଦ୍‌ବ୍ୟତୀତ ହାତୀ ଗୁମ୍ଫା ଗୁଡ଼ିକୁ ମଧ୍ୟ ପର୍ଯ୍ୟବେକ୍ଷଣ କରିଥିଲେ। ବିଶ୍ୱବିଦ୍ୟାଳୟ ଅନୁଦାନ ଆୟାଗର ସଦସ୍ୟଭାବରେ ସେ ଶ୍ରୀନଗର ସ୍ଥିତ କାଶ୍ମୀର ବିଶ୍ୱବିଦ୍ୟାଳୟ ପରିଭ୍ରମଣ କରିଥିଲେ ଏବଂ କାଶ୍ମୀରର ନୈସର୍ଗିକ ଶୋଭା ତାଙ୍କୁ ବିମୋହିତ କରିଥିଲା। କାଶ୍ମୀରରେ ତାଙ୍କର ପତ୍ନୀ ହେଲେନ ବିଭିନ୍ନ ପ୍ରକାରର ଟସର ପୋକ ଦେଖିଥିଲେ ଏବଂ କେତେକ ଟସର ପୋକ ଗବେଷଣା ପାଇଁ ସଂଗ୍ରହ କରିଥିଲେ।

ଏଲାହାବାଦର **ଗଙ୍ଗାସାଗର ସଂଗମ**ଠାରେ ସେ ଗଙ୍ଗାନଦୀରେ ସ୍ନାନ କରିଥିଲେ ଏବଂ ହିନ୍ଦୁମାନଙ୍କ ଦ୍ୱାରା ଏହାର ପବିତ୍ରତା ସଂପର୍କରେ ଦିଆଯାଉଥିବା ମତକୁ ସମର୍ଥନ ଜଣାଇଥିଲେ । ଏଲାହାବାଦଠାରେ ଅନୁଷ୍ଠିତ ହେଉଥିବା କୁମ୍ଭମେଳା ଓ ଅର୍ଦ୍ଧକୁମ୍ଭମେଳା ତାଙ୍କୁ ବେଶ୍ ଆମୋଦିତ କରିଥିଲା । ଲକ୍ଷ ଲକ୍ଷ ଲୋକ ଏକ ସ୍ଥାନରେ ଏକତ୍ରିତ ହେବାର ଦୃଶ୍ୟ ସେ ଉପଭୋଗ କରିଥିଲେ । ବିଭିନ୍ନ ସମ୍ପ୍ରଦାୟ, ବିଭିନ୍ନ ବୟସ, ବିଭିନ୍ନ ଭାଷାଭାଷୀ ପୁରୁଷ ଓ ସ୍ତ୍ରୀଲୋକ ଏଠାରେ ସ୍ନାନ କରିବା ଦେଖି ସେ ବିସ୍ମିତ ହୋଇଥିଲେ ଏବଂ ସେମାନଙ୍କୁ ନେଇ ଗବେଷଣା କରିବା ପାଇଁ ସ୍ଥିର କରିଥିଲେ । ସମସ୍ତ ଲୋକ ଖାଲିପାଦରେ ଯାଇ ସ୍ନାନ କରୁଥିଲେ ଓ ଠାକୁରଙ୍କୁ ଦର୍ଶନ କରୁଥିଲେ । ଏହି କାରଣ ଯୋଗୁଁ ସେମାନଙ୍କ ଗୋଡ଼କୁ ଦେଖିବା ଖୁବ୍ ସହଜ ଥିଲା । ବିଭିନ୍ନ ଲୋକଙ୍କର ଗୋଡ଼ର ଗୋଇଠିରେ କି ପ୍ରକାର ବିଭିନ୍ନତା ରହିଛି ସେ ସମ୍ବନ୍ଧରେ ଗବେଷଣା ପାଇଁ ତାଙ୍କର ସହକର୍ମୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ଗଙ୍ଗାନଦୀ କୂଳରେ ଅବସ୍ଥିତ ବନାରସ ନଗରୀ ହିନ୍ଦୁ ସଂସ୍କୃତିର ଏକ ପବିତ୍ର ପୀଠସ୍ଥଳ ଅଟେ । ଏଠାରେ ପ୍ରସିଦ୍ଧ କାଶୀ ବିଶ୍ୱନାଥ ମନ୍ଦିର ଅବସ୍ଥିତ । ଏତଦ୍‌ବ୍ୟତୀତ ଛୋଟ ବଡ଼ ଅନେକ ମନ୍ଦିର ଏହି ପବିତ୍ର ବନାରସ ନଗରୀର ଶୋଭା ବର୍ଦ୍ଧନ କରିବା ସହିତ ହିନ୍ଦୁ ଚେତନାର ଉଦ୍ରେକ କରିପାରୁଛି । ପ୍ରଫେସର ହାଲ୍‌ଡେନ୍ ଭାରତକୁ ଆସିବା ପରେ ପ୍ରାୟତଃ ନିଜର ଧର୍ମ ପରିବର୍ତ୍ତନ କରି ହିନ୍ଦୁ ଧର୍ମକୁ ଆଦରି ନେଇଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । ତେଣୁ ସେ ଏହି ପରିଭ୍ରମଣ ଫଳରେ ଆଧ୍ୟାତ୍ମିକ ଶାନ୍ତି ଲାଭ କରିଥିଲେ । ବନାରସ ବିଶ୍ୱବିଦ୍ୟାଳୟ ପରିସର ପରିଭ୍ରମଣ କରି ତାର ଶିକ୍ଷାଦାନ ଓ ଗବେଷଣା ସମ୍ପର୍କରେ ଆଲୋଚନା କରିଥିଲେ ଏବଂ ଉନ୍ନତ ମାନର ଶିକ୍ଷାଦାନ ହେଉଥିବା ଜାଣି ଅତ୍ୟନ୍ତ ପ୍ରସନ୍ନ ହୋଇଥିଲେ ।

ସେ ଦକ୍ଷିଣଭାରତ ପରିଭ୍ରମଣରେ ଯାଇ ମାନ୍ଦ୍ରାସ, ହାଇଦ୍ରାବାଦ, କେରଳ, **ପଣ୍ଡିଚେରୀ** ଇତ୍ୟାଦି ପରିଦର୍ଶନ କରିଥିଲେ । କେରଳର ନଡ଼ିଆ ବଗିଚା **ପରିଦର୍ଶନ** କରିବା ପରେ ସେ ନଡ଼ିଆ ବାହୁଙ୍ଗା ଗଛରେ କିଭଳି ଭାବରେ **ବୃଦ୍ଧିପାଉଛି** ଓ ତାର ଗଛର ଫଳର ପରିମାଣ ସହ କି ସମ୍ପର୍କ ରହିଛି ସେ ସଂପର୍କରେ ଏକ ବିବରଣୀ ପ୍ରକାଶ କରିଥିଲେ । ଏତଦ୍‌ବ୍ୟତୀତ ସେ ଉତ୍ତରପୂର୍ବ ପାର୍ବତ୍ୟ ଅଞ୍ଚଳର ଆସାମ ମଧ୍ୟ ପରିଭ୍ରମଣ କରିଥିଲେ ।

ଭାରତରେ ଥିବା ସମୟରେ ସେ ଶ୍ରୀଲଙ୍କାର ଗଭର୍ଣ୍ଣର ଜେନେରାଲଙ୍କର ଦ୍ୱାରା ଆମନ୍ତ୍ରିତ ହୋଇ ଶ୍ରୀଲଙ୍କା ପରିଦର୍ଶନରେ ଯାଇଥିଲେ । ଶ୍ରୀଲଙ୍କାର ଗଭର୍ଣ୍ଣର ଜେନେରାଲ ସାର୍ ଅଲିଭର ଗୁନେଟିଲେକେ ତାଙ୍କୁ ସ୍ୱାଗତ କରିଥିଲେ ଏବଂ ସେ ଯୋଗଦେଇଥିବା ପ୍ରତ୍ୟେକ ସଭାରେ ସେ ଉପସ୍ଥିତ ରହି ତାଙ୍କର ଉଚ୍ଚକୋଟୀର ବକ୍ତୃତାକୁ ଶୁଣୁଥିଲେ । ପ୍ରଫେସର ହାଲ୍ଡେନ୍‌ଙ୍କର ବୈଜ୍ଞାନିକ କାର୍ଯ୍ୟକଳାପ ଓ ମାନବିକତାବୋଧ ଉପରେ ଆଧାରିତ ଚିନ୍ତାଧାରାରେ ସେ ଏଭଳି ଭାବରେ ମୁଗ୍ଧ ହୋଇଯାଇଥିଲେ ଯେ ତାଙ୍କର ମୃତ୍ୟୁପରେ ସେ କହିଥିଲେ, ''ପ୍ରଫେସର ହାଲ୍ଡେନ୍ ଜଣେ ପୃଥିବୀ ପ୍ରସିଦ୍ଧ ଜନନାୟକ ଥିଲେ, ଯାହାଙ୍କର ବିଚାରଧାରା ଦୃଢ଼ ବିଶ୍ୱାସ ଉପରେ ପର୍ଯ୍ୟବଶିତ ଥିଲା ଏବଂ ଏ ବିଶ୍ୱର ସଂଯୋଜନା ଉପରେ ତାଙ୍କର ଗଭୀର ଜ୍ଞାନ ରହିଥିଲା ।'' ଶ୍ରୀଲଙ୍କା ପରିଭ୍ରମଣ ସମୟରେ ବୈଜ୍ଞାନିକ ଉପନ୍ୟାସକାର ଓ ପ୍ରାବନ୍ଧିକ ଆର୍ଥର ସି କ୍ଲାର୍କଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା ।

ସେ ୧୯୬୧ ମସିହାରେ ଇଉରୋପ ଓ ଇସ୍ରାଏଲ ପରିଭ୍ରମଣରେ ଯାଇଥିଲେ । ଏହି ସମୟ ମଧ୍ୟରେ ସେ ପ୍ୟାରିସ, ରୋମ, ଗ୍ଲାସଗୋ, ଲଣ୍ଡନ, ଇଟାଲୀ ଇତ୍ୟାଦି ସ୍ଥାନ ପରିଭ୍ରମଣ କରିଥିଲେ ଏବଂ ବିଭିନ୍ନ ଏକାଡ଼େମୀଦ୍ୱାରା ଆୟୋଜିତ ବୈଜ୍ଞାନିକ ସମ୍ମିଳନୀମାନଙ୍କରେ ବକ୍ତୃତା ପ୍ରଦାନ କରିଥିଲେ । ଅନେକ ଗୁଡ଼ିଏ ବିଶ୍ୱବିଦ୍ୟାଳୟ ତାଙ୍କୁ ବିଭିନ୍ନ ସମ୍ମାନଜନକ ପୁରସ୍କାରରେ ମଧ୍ୟ ଅଳଙ୍କୃତ କରିଥିଲେ ।



# ୧୪

# ହାଲ୍‌ଡ଼େନ୍‌ଙ୍କ ଶେଷଇଚ୍ଛା

ପ୍ରଫେସର ହାଲ୍‌ଡ଼େନ୍ ୧୯୬୩ ମସିହାର ଶେଷ ଭାଗରେ ଆମେରିକା ପରିଭ୍ରମଣରେ ଯାଇଥିଲେ। ସେ ଆମେରିକାରୁ ଫେରିବା ପରେ ପରେ କର୍କଟରୋଗରେ ଆକ୍ରାନ୍ତ ହୋଇଛନ୍ତି ବୋଲି ଜାଣିପାରିଥିଲେ। କେତେକ ମତ ଦିଅନ୍ତି ଯେ ତାଙ୍କୁ ଚିକିତ୍ସା କରୁଥିବା ଡ଼ାକ୍ତରମାନେ ବହୁତ ଆଗରୁ ତାଙ୍କୁ କର୍କଟ ରୋଗ ହୋଇଛି ବୋଲି ଜାଣିଥିଲେ ମାତ୍ର ତାହା ପ୍ରକାଶ କରିନଥିଲେ। କିନ୍ତୁ ହାଲ୍‌ଡ଼େନ୍‌ଙ୍କ ଦେହରେ କର୍କଟରୋଗର ଲକ୍ଷଣଗୁଡ଼ିକ ଆସ୍ତେ ଆସ୍ତେ ପ୍ରକାଶ ପାଇବା ପରେ ସେମାନେ ଏହି କଥା ହାଲ୍‌ଡ଼େନ୍‌ଙ୍କ ଆଗରେ ପ୍ରକାଶ କରିଥିଲେ ଏବଂ ତାଙ୍କର ଉପଯୁକ୍ତ ଚିକିତ୍ସା କରାଯାଇଥିଲା।

ପ୍ରଫେସର ହାଲଡ଼େନ୍ କର୍କଟ ରୋଗ ସମ୍ପର୍କରେ ତାଙ୍କର ପୁସ୍ତକ "ବିଜ୍ଞାନ ଏବଂ ଦୈନନ୍ଦିନ ଜୀବନ" ପୁସ୍ତକରେ ୧୯୪୫ ମସିହାରେ "ଇକନମିକସ୍ ଅଫ୍ କ୍ୟାନସର" ଶୀର୍ଷକ ଏକ ପ୍ରବନ୍ଧ ପ୍ରକାଶ କରିଥିଲେ। ଏହି ପ୍ରବନ୍ଧରେ ସେ ସମୟରେ କର୍କଟ ରୋଗର ଲକ୍ଷଣ, ବିଭିନ୍ନ ଶ୍ରେଣୀର ଲୋକମାନଙ୍କ ଉପରେ ତାର ପ୍ରଭାବ ସଂପର୍କରେ ବିଷଦ ଭାବରେ ଆଲୋଚନା କରିଥିଲେ। ପୁରୁଷ ଅପେକ୍ଷା ସ୍ତ୍ରୀମାନଙ୍କ ଦେହରେ, ଧନୀଲୋକଙ୍କ ଅପେକ୍ଷା ଗରିବ ଲୋକ ଦେହରେ ଓ ଚାଳିଶ ବର୍ଷରୁ ଅଧିକ ବୟସର ଲୋକଙ୍କ ଦେହରେ ଏ ରୋଗ କାହିଁକି ବେଶୀ ହେଉଛି ସେ ବିଷୟରେ ନିଜର ମତାମତ ପ୍ରକାଶ କରିବା ସହିତ ଏ ରୋଗକୁ କିପରି ଏଡ଼ାଯାଇ ପାରିବ ସେ ସଂପର୍କରେ ଆଲୋକପାତ କରିଥିଲେ।

ଡ଼ାକ୍ତରମାନେ ମତ ପ୍ରକାଶ କରନ୍ତି ଯେ ପ୍ରଫେସର ହାଲ୍‌ଡ଼େନ୍ ଜଣେ ବିଶିଷ୍ଟ ବୈଜ୍ଞାନିକ ହେଲେ ମଧ୍ୟ ନିଜର ଶରୀରର ଆଦୌ ଯତ୍ନ ନେଉନଥିଲେ। ବରଂ ବିଭିନ୍ନ ଦୁଃସାହସିକ ଗବେଷଣା କରିବା ପାଇଁ ବିଷାକ୍ତ ରାସାୟନିକ ପଦାର୍ଥ ଭକ୍ଷଣ କରୁଥିଲେ ଏବଂ ସ୍ୱାସ୍ଥ୍ୟହାନୀ ହେଲାଭଳି ଗବେଷଣାରେ ସେ ନିଜକୁ ଗିନପିଗ ଭାବରେ ବ୍ୟବହାର କରୁଥିଲେ। ଏହି କାରଣ ଯୋଗୁଁ ସେ ଦୀର୍ଘଦିନ ପର୍ଯ୍ୟନ୍ତ ମେରୁଦଣ୍ଡରେ ପୀଡ଼ା ଅନୁଭବ କରିଥିଲେ ଏବଂ ବୃଦ୍ଧାବସ୍ଥାରେ କର୍କଟ ରୋଗାକ୍ରାନ୍ତ ହୋଇ ୧୯୬୪ ମସିହା ଡ଼ିସେମ୍ବର ୧ ତାରିଖ ଦିନ ମୃତ୍ୟୁ ବରଣ କରିଥିଲେ।



ପ୍ରଫେସର ଗାଲ୍‌ଷ୍ଟନ୍ ପତ୍ନୀ ଡେଲେନ୍‌ଙ୍କ ସହ
କେତେକ ଫୁଲଗଛକୁ ପର୍ଯ୍ୟବେକ୍ଷଣ କରୁଛନ୍ତି

ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ମୃତ୍ୟୁପରେ ତାଙ୍କର ଶେଷ ଇଚ୍ଛାପତ୍ରକୁ ଖୋଲାଯାଇଥିଲା ଏବଂ ତାହା ଉପସ୍ଥିତ ଭଦ୍ରମଣ୍ଡଳୀଙ୍କୁ ବିସ୍ମିତ କରିଥିଲା। ସେଥିରେ ଲେଖାଥିଲା "ମୋର ମୃତ୍ୟୁରେ କୌଣସି ଛୁଟି ଘୋଷଣା କରାଯିବ ନାହିଁ, ଶୋକ ପାଳନ କରାଯିବ ନାହିଁ। ମୋର ମୃତ ଶରୀର ଉପରେ ଫୁଲ ମାଳ ଦିଆଯିବ ନାହିଁ ଏବଂ ଏହାକୁ ପୋଡ଼ା ଯିବ ନାହିଁ କିମ୍ବା କବର ଦିଆଯିବ ନାହିଁ। ମୋର ମୃତ ଦେହକୁ ଏକ ଭେଷଜ ମହାବିଦ୍ୟାଳୟର ଶରୀର ବ୍ୟବଚ୍ଛେଦ ବିଭାଗକୁ ପଠାଇ ଦିଆଯିବ ଯେଉଁଠାରେ ସେମାନେ ମୋର ଶରୀରକୁ ବ୍ୟବଚ୍ଛେଦ କରି ଶରୀର ବିଷୟରେ ଜ୍ଞାନ ଆହରଣ କରିପାରିବେ।"

ପୃଥିବୀର ମହାମନିଷୀଙ୍କ କଥାତ ଦୂରେ ଥାଉ କୌଣସି ସାଧାରଣ ମଣିଷ ମଧ ଏହିଭଳି ଇଚ୍ଛା ପ୍ରକଟ କରିବ ନାହିଁ। ପୃଥିବୀର ଜନନାୟକମାନେ ହାଲ୍‌ଡ଼େନ୍‌ଙ୍କର ପଦାଙ୍କ ଅନୁସରଣ କରି ଯଦି ଏଭଳି ଇଚ୍ଛାପତ୍ରରୁ ଏକମାତ୍ର ଇଚ୍ଛା ପ୍ରକାଶ କରନ୍ତେ ତାହେଲେ ବିଶ୍ୱର ଅଶେଷ ମଙ୍ଗଳ ସାଧନ ହୋଇପାରନ୍ତା। ପ୍ରଫେସର ହାଲ୍‌ଡ଼େନ୍ ନିଜର ସ୍ତ୍ରୀ ହେଲେନଙ୍କୁ ଏହି ସମସ୍ତ ସର୍ତ୍ତକୁ ସମ୍ପୂର୍ଣ୍ଣ ଭାବରେ ଯେପରି ପାଳନ କରାଯାଇ ପାରିବ ସେଥିପାଇଁ ନିର୍ଦ୍ଦେଶ ଦେଇ ଯାଇଥିଲେ ଏବଂ ହେଲେନ ସ୍ୱାମୀଙ୍କର ଶେଷ ଇଚ୍ଛାକୁ ପାଳନ କରି ସେ ମହନୀୟ ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ।

—o—

# ହାଲ୍‌ଡ଼େନ୍‌ଙ୍କ ଶେଷ କବିତା

ପ୍ରଫେସର ହାଲ୍‌ଡ଼େନ୍ ବିଜ୍ଞାନର ପ୍ରଚାର ପାଇଁ ଅନେକଗୁଡ଼ିଏ ବୈଜ୍ଞାନିକ ପ୍ରବନ୍ଧ, ଗଳ୍ପ, ନିବନ୍ଧ ଓ ପୁସ୍ତକ ରଚନା କରିଥିଲେ । ଏତଦ୍‌ବ୍ୟତୀତ ସେ ''ବ୍ରାଇଟର ବାଇଓକେମିଷ୍ଟ୍ରି'' ପତ୍ରିକା ପାଇଁ କେତେକ ହାସ୍ୟୋଦ୍ଦୀପକ ବୈଜ୍ଞାନିକ କବିତା ୧୯୨୫ ମସିହାଠାରୁ ଲେଖୁଥିଲେ । ସେଗୁଡ଼ିକ ପ୍ରତିବର୍ଷ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ''ବାଇଓ କେମିକାଲ ଇନଷ୍ଟିଚିଉଟ'' ଦ୍ୱାରା ପ୍ରକାଶିତ ହେଉଥିଲା ଏବଂ ପାଠକ ମହଲରେ ବିଶେଷ ଭାବରେ ଆଲୋଚିତ ହେବା ସହିତ ପ୍ରଶଂସିତ ମଧ୍ୟ ହେଉଥିଲା । ଓଡ଼ିଶାରେ ଅବସ୍ଥାନ କାଳରେ ହାଲ୍‌ଡ଼େନ୍ ମଧ୍ୟ କେତେକ କବିତା ଇଂରାଜୀ ଭାଷାରେ ରଚନା କରିଥିଲେ । ତାଙ୍କର ଶେଷ କବିତାଟି ହେଲା, ''କ୍ୟାନସର ଇଜ୍ ଏ ଫନି ଥିଙ୍ଗ'' । ଏହି କବିତାଟି ପ୍ରଥମେ ନିଉ ଷ୍ଟେଟ୍‌ସ ମ୍ୟାନ ପତ୍ରିକାରେ ପ୍ରକାଶ ପାଇଥିଲା ଏବଂ ପରେ ପରେ ପରସ୍ପେକ୍ଟିଭସ ଇନ୍ ବାଇଓଲୋଜିକାଲ ମେଡ଼ିସିନ ପତ୍ରିକାରେ ପୁନଃ ପ୍ରକାଶିତ ହୋଇଥିଲା ।

ପ୍ରଫେସର ହାଲ୍‌ଡ଼େନ୍ କର୍କଟ ରୋଗରେ ପୀଡ଼ିତ ହୋଇ ଚିକିତ୍ସିତ ହେଉଥିବା ସମୟରେ ଏହି କବିତାଟି ରଚନା କରିଥିଲେ । ତେଣୁ ଏହି କବିତାଟିରେ ସେ କର୍କଟ ରୋଗ ସଂପର୍କରେ ତାଙ୍କର ଆଲୋକପାତ କରିବା ସହିତ ଏ ରୋଗର ଉପଶମ ପାଇଁ ତାଙ୍କର କି କି ଚିକିତ୍ସା କରାଯାଇଥିଲା ସେ ବିଷୟରେ ଆଲୋକପାତ କରିଛନ୍ତି । ଏହି କବିତାକୁ ସୁନ୍ଦର ଭାବରେ ଓଡ଼ିଆ ଭାଷାରେ ଭାଷାନ୍ତର କଲେ ମଧ୍ୟ ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ନିଜସ୍ୱ ଭାବନାକୁ ପ୍ରତିଫଳନ କରିବା ଆଦୌ ସମ୍ଭବ ନୁହେଁ । ତେଣୁ ନିମ୍ନରେ ପାଠକମାନଙ୍କ ଅବଗତି ନିମନ୍ତେ ପ୍ରଫେସର ହାଲ୍‌ଡ଼େନ୍‌ଙ୍କର ଏହି ମୂଳ ଇଂରାଜୀ କବିତାଟି ଉପସ୍ଥାପନା କରାଯାଇଛି ।

# CANCER'S A FUNNY THING

## J.B.S.Haldane

I wish I had the voice of Homer
To sing of rectal carcinoma
which kills a lot more chaps, in fact
Then were bumped off when Troy was sacked
Yet, thanks to modern surgeon's skills,
It can be killed before it kills
Upon a scientific basis
In nineteen out of twenty cases.

I noticed I was passing blood
(Only a few drops, not a flood)
So pausing on my homeward way
From Tallahassee to Bombay
I asked a doctor, now my friend
To peer into my hinder end.
To prove or to disprove the rumour
That I had a malignant tumour
Then pumped in Ba $(SO)_4$
Till I could really stand no more,
And when sufficient had been pressed in,
They photographed my large intestine.
In order to decide the issue
They next scraped out some bits of tissue.
(Before they did so, some good pal
Had knowked me out with pentothal,
whose action is extremely quick.
And does not leave me feeling sick)

The microscope returned the answer
That I had certainly got cancer.
So I was wheeled to the theatre
where holes were made to make me better.

One set is in my perineum
Where I can feel, but can yet see 'em.
Another made me like a kipper
Or female prey of Jack the Ripper.

Through this incision, I don't doubt
The neoplasm was taken out,
Along with colon and lymph nodes
where cancer cells, might find abodes
A third much smaller hole is meant
To function as a ventral vent,
So now I am like two faced Janus
The only god who see his anus
I'll swear, without the risk of perjury,
It was a snappy bit of surgery.
My rectum is serious loss to me.
But I have a very neat colostomy,
and hope as soon as I am able,
To make it keep a fixed time-table.
So do not wait for aches and pains
To have a surgeon mend your drains
If he says "Cancer" You're a dunce
Unless you have it out at once,
For if you wait it's sure to swell,
And may have progeny as well.
My final word, before I'a done.

Is "Cancer can be rather fun".
Thanks to the nurses and Nye Bevan [5]
The NHS[6] is quite like heaven
provided one confronts the tumor
With a sufficient sense of humor.
I know that cancer often kills
But so do cars and sleeping pills;
And it can hurt one till one sweats
So can bad teeth and unpaid debts.

A spot of laughter, I am sure,
Often accelerates one's cure
So left us patients do out bit
To help the surgeons make us fit.

—0—

ପ୍ରଫେସର ଜେ.ବି.ଏସ୍.ହାଲଡ୍ରେନ୍ (୧୮୯୨-୧୯୬୪) ଏକାଧାରରେ ଜଣେ ବୈଜ୍ଞାନିକ, ରାଜନିତିଜ୍ଞ, ବିଶ୍ୱ ପରିବ୍ରାଜକ, ସମ୍ପାଦକ, ସମୀକ୍ଷକ, ଦୁଃସାହସୀ ଗବେଷକ, ବିଜ୍ଞାନ ପ୍ରଚାରକ ଓ ଦାର୍ଶନିକ ଭାବରେ ସମଗ୍ର ପୃଥିବୀରେ ସୁଖ୍ୟାତି ଲାଭ କରିଥିଲେ। ବ୍ରିଟିଶ ନାଗରିକତ୍ୱ ତ୍ୟାଗ କରି ଜୀବନର ଶେଷଭାଗରେ ସେ ଓଡ଼ିଶାରେ ସ୍ଥାୟୀ ଭାବରେ ବସବାସ କରିଥିଲେ। ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଆମନ୍ତ୍ରିତ ହୋଇ ସେ ଭୁବନେଶ୍ୱରଠାରେ ଓଡ଼ିଶା ସରକାରଙ୍କର "ଜେନେଟିକସ ଓ ବାଇଓମେଟ୍ରି ଲାବୋରେଟୋରୀ" ପ୍ରତିଷ୍ଠା କରିଥିଲେ। ୧୯୬୪ ମସିହା ଡିସେମ୍ବର ୧ ତାରିଖ ଦିନ ଭୁବନେଶ୍ୱରଠାରେ ସେ ଇହଲୀଳା ସମ୍ବରଣ କରିଥିଲେ। ବିଜ୍ଞାନ ଜଗତକୁ ତାଙ୍କର ମହନୀୟ ଅବଦାନ ପାଇଁ ସେ ଆନ୍ତର୍ଜାତୀୟ ସ୍ତରରେ ଅନେକ ସମ୍ମାନଜନକ ପୁରସ୍କାରରେ ଅଳଂକୃତ ହେବା ସଙ୍ଗେ ସଙ୍ଗେ "ବିଜ୍ଞାନ ଜଗତର ଋଷି" ନାମରେ ପରିଚିତ ହୋଇଥିଲେ।